# ଡାଇନୋସରର ଦୁନିଆ

ରବୀନ୍ଦ୍ରନାଥ ମାଝୀ



# ଡାଇନୋସରର ଦୁନିଆ



ରବୀନ୍ଦ୍ରନାଥ ସ୍ୱାଇଁ



# ଡ଼ାଇନୋସର୍‌ର ଦୁନିଆ


ଲେଖକ :
**ରବୀନ୍ଦ୍ରନାଥ ମାଝୀ**

ପ୍ରଚ୍ଛଦ :
**ଅସିତ ମୁଖାର୍ଜୀ**

ଅଳଙ୍କରଣ :
**ପ୍ରିୟଦର୍ଶିନୀ ମହାନ୍ତି**

ପ୍ରକାଶକ :






କଲ୍ୟାଣୀ ନଗର, କଟକ
ପିନ୍ : ୭୫୩ ୦୧୩

ପ୍ରଥମ ପ୍ରକାଶ : ୧୯୯୫

ମୂଲ୍ୟ : ଟ ୪୦.୦୦
(ଚାଳିଶ ଟଙ୍କା ମାତ୍ର)


# Dinosarra Dunia

*(Oriya)*

*(The world of Dinosaurs)*


*Written by* **Rabindranath Majhee** ● *Cover design :* **Asit Mukherjee** ● *Illustration :* **Priyadarsini Mohanty** ● *DTP Photo type Setting and grahics :* **Design Terace**, Medical Road, Ranihat, Cuttack ● *Photo Scanning, Cover and Printing :* **Graphic Art Offset Press,** Nuapatna, Cuttack ● *Published by* : **Kishore Kahani Prakasani,** Kalyani Nagar, Cuttack -753 013 ● *Year :* **1995**

**Price : Rs. 40 /-**

ମୋ ବାପା ବୋଉଙ୍କୁ...

ଓ

ପିଲାମାନଙ୍କ ପାଇଁ

ନିୟମିତ ବହି କିଣୁଥିବା

ସବୁ ବାପା ବୋଉଙ୍କୁ...

# ଡାଇନୋ ଗଳ୍ପ : ଅଳ୍ପ ଅଳ୍ପ





# ଡାଇନୋ-ପାର୍କ





ବରୋସରସ

'ବରୋସରସ' ର ଅର୍ଥ 'ମାଦଳ ଗୋଧି' । ଜୁରାସିକ ଯୁଗର ଶେଷକାଳରେ ୭୫ ଫୁଟରୁ ୯୦ ଫୁଟ ଯାଏ ଲମ୍ବର ଡ଼ାଇନୋସର ଆମେରିକା ଓ ତାଞ୍ଜାନିଆରେ ଦେଖା ଯାଉଥିଲେ । ଏହାର ତିରିଶ ଫୁଟ ଲମ୍ବର ବେକ, ହାତୀ ଭଳି ଢୋଦା ଢୋଦା ଗୋଡ଼ ଓ ଚକା ଖୋଜ ଥିଲା । ସିକାଡ଼ସ ଓ କୋନିଫାରର ପତ୍ର ଓ ଫଳ ଖାଉଥିଲେ । ଆମ ଭାରତ ବର୍ଷରେ ଏହି ଭଳି ଯେଉଁ ଢେଙ୍ଗା ମାଦଳ ଗୋଧିଟି ଦେଖା ଯାଉଥିଲା ତାର ନାମ ଥିଲା ବରପାସରସ । ଏହାର ଲମ୍ବ ୬୦ ଫୁଟ ଥିଲା ।

অসুর

ড্রাগন

কঙ্গলঙ্



## ।। ଅସୁର : ଡ୍ରାଗନ : କଙ୍ଗଲଙ୍ଗ ।।

ଜୀଅନ୍ତା ଡାଇନୋସରକୁ କେହି ଆଖିରେ ଦେଖି ନାହିଁ । ମାତ୍ର ଆମ ଆଗରେ ଡାଇନୋସର ସଂପର୍କରେ ଅନେକ ରୂପଚିତ୍ର, କଥା ଓ କାହାଣୀ । ସେ ଯୁଗ ଥିଲା ଅନ୍ଧାରୀଯୁଗ । ଏକଥା ନୁହେଁ ଯେ ଖାଲି ଅନ୍ଧାର ଥିଲା ! ସୂର୍ଯ୍ୟ ଥିଲା..... ଆଲୋକ ଥିଲା । ଚାରିଆଡ଼େ ଝାଡ଼ ଜଙ୍ଗଲ । ସମୁଦ୍ରରେ ଉଷୁମ ଢେଉ ଡିଆଁ ମାରୁଥିଲା । ମାତ୍ର କୁଆର ନଥିଲା । ଗଛ ଥିଲା, ଫୁଲ ନଥିଲା । ପତ୍ରଗୁଡ଼ା ଛୁଞ୍ଚି ଭଳି, ଟାଆଁସା ଓ ଚେପ୍‌ଟା । ଗଛ ସବୁ ଏତେ ମୋଟା ଯେ କୁଣ୍ଢ ପାଉ ନଥିଲା । ପୃଥବୀର ମାଟି କହିଲେ ଖଣ୍ଡିଏ ମାତ୍ର ଭୂଖଣ୍ଡ ଥିଲା । ଆଉ କହୁଥିଲା ମେଦିନୀ ।

ସେ ଯୁଗରେ ଥିଲା ଘନ ଜଙ୍ଗଲ, ଉଚ୍ଚ ପାହାଡ଼ ଓ ଉଚ୍ଛୁଳୁଥିବା ନଈ । ଜଙ୍ଗଲରେ ରହୁଥିବ ଅସୁର ! ସେ ଚାଲିଗଲା ବେଳେ ମେଦିନୀ ଦୁଲୁକି ଉଠୁଥିବ । ଇଚ୍ଛା କଲେ ଗଛଠୁ ଡେଙ୍ଗା ହୋଇ ଉହୁଁକି ଦେଖୁଥିବ– ସୂର୍ଯ୍ୟ ବୁଡ଼ିଲା କି ନାହିଁ । ବଳିଲା ବଳିଲା ତା'ର ହାତଗୋଡ଼ । ପେଟ ସତେ କି ଗୋଟାଏ ଘୁମ ହୋଇଥିବ । ଆଁ କରି ମଇଁଷିଟା, ଗିଳି ଦଉଥିବ । ମୁଣ୍ଡରେ ଶିଙ୍ଗ; ନିଃଶ୍ୱାସରେ ଝଡ଼ ବହିଯାଉଥିବ । ଆଉ ମନକୁ ମନ ନାଆଁ ଦିଏ ସେମାନଙ୍କର-ମେଘନାଦ, ସୁବାହୁ ବା ବକାସୁର । ଅସୁର କାହାଣୀ ଶୁଣିଲେ ଡରମାଡ଼େ । ଆଈମା' କୋଳରେ ଗୋଡ଼ ପୁରେଇ ପିଲାମାନେ କୁଙ୍କୁରି କାଙ୍କିରି ହୋଇ ଶୋଇଯାଆନ୍ତି ।



# ଅସୁର

## ଡ୍ରାଗନ

### କଙ୍ଗଲଙ୍ଗ୍

ଆମେ କହୁ ଅସୁର । ଆଫ୍ରିକାର ଲିବିୟାରେ କହନ୍ତି ଡ୍ରାଗନ । କୁମ୍ଭୀର ଭଳି ଲମ୍ବା ମୁହଁ । ଆଁ କଲେ ଧାଡ଼ି ଧାଡ଼ି ଦାନ୍ତ । ଥୋମଣି ଉପରେ ଗୋବା ଗୋବା ଆବୁ । ତାଳୁ ଉପରେ ଦି'ଟା ବଡ଼ ଶିଙ୍ଗ, ପିଠିରେ ଡେଣା, ଯୋଡ଼ାଏ ଗୋଡ଼ । ଚଞ୍ଚାଣ ଭଳି ମୁନିଆ ନଖ । ସାପଭଳି ଲମ୍ବା ଲାଞ୍ଜ । ଲାଞ୍ଜରେ ପିଟି ପିଠି ଭାଙ୍ଗି ଦଉଥିବ । ନଖରେ ପେଟ ଚିରି ପକଉଥିବ । ଆଁ କରି ଗୋଟା ଗୋଟା ଜୀବଜନ୍ତୁ ଗିଳି ଦଉଥିବ । ନିଃଶ୍ୱାସରେ ନିଆଁ ବାହାରୁଥିବ । ଇଛା କଲେ ଉଡ଼ି ଯାଉଥିବ ଆକାଶକୁ । ଥରେ ଗୋଟାଏ ଡ୍ରାଗନ ଲିବିୟାକୁ ଯାଇଥିବା ବାଟ ମୁହଁରେ ଆସି ବସିଲା । ମଣିଷ, ମଇଁଷି, ମେଣ୍ଢା ମାରି ଖାଇଲା । ରାଜ୍ୟରେ ଭାଳେଣି ପଡ଼ିଗଲା । ରାଜା କାକୁତି ମିନତି କଲେ । ଡ୍ରାଗନ କହିଲା - ''ଠିକ୍ ଅଛି, ମୁଁ ଏମିତି ଆଉ ମନଇଛା ଜୀବଜନ୍ତୁ ଓ ମଣିଷ ମାରିବି ନାହିଁ । ହେଲେ ମୋ ପାଇଁ ପାଳି କରି ମେଣ୍ଢା ଗୋଟିଏ ନିଇତି ପଠାଇବ ।''

ରାଜା ରାଜି ହୋଇଗଲେ । ସବୁଦିନ ଗୋଟିଏ ଗୋଟିଏ ମେଣ୍ଢା ପଠେଇ ପଠେଇ ରାଜ୍ୟରୁ ମେଣ୍ଢା ସରିଗଲା । ଶେଷକୁ ପାଳି କରି ମଣିଷ ପଠେଇବାକୁ ହେଲା । ମାତ୍ର ଡ୍ରାଗନ କହିଲା, ''କୁମାରୀ ଝିଅର ମାଂସ ସୁଆଦ । ସବୁଦିନେ କୁଆଁରୀ ଝିଅଟିଏ ପଠାଅ । ରାଜା ମାନିଗଲେ । ଆଦେଶ ଦେଲେ, ସବୁଦିନ ପାଳିକରି ଗୋଟିଏ କୁଆରୀ କନ୍ୟା ଡ୍ରାଗନର ଭୋଜନ ପାଇଁ ଯିବେ । ଏପଟେ ଡ୍ରାଗନ, ସେପଟେ ରାଜା । ରାଜ୍ୟବାସୀ ବିକଳରେ ସେ ଆଦେଶକୁ ମାନିନେଲେ ।

ଶେଷକୁ ରାଜକୁମାରୀ 'ସାବ୍ରା'ର ପାଳି ପଡ଼ିଲା । ରାଜା ଚିନ୍ତିତ ହୋଇ ପଡ଼ିଲେ । କ'ଣ ବା କରି ପାରିବେ । ଡ୍ରାଗନ ରାଗିଲେ ରାଜ୍ୟ ବିନାଶ ହୋଇଯିବ । 'ସାବ୍ରା'କୁ ଶେଷରେ ଡ୍ରାଗନ ପାଖକୁ ପଠାଗଲା । ଡେରି ହେଉଥାଏ ବୋଲି ଡ୍ରାଗନ ହେଉଡ଼ି ମାରୁଥାଏ ।



# ଅସୁର

## ଡ୍ରାଗନ

## କଙ୍ଗଲଙ୍ଗ୍

ସେତିକିବେଳେ ଲିବିୟାରୁ ଜଣେ ବୀରପୁରୁଷ ସେଦିନ ସେ ବାଟେ ରୋମ ଯାଉଥିଲେ । ଘୋଡ଼ାରେ ସେ ବସିଥା'ନ୍ତି । ଦେହରେ ସାଞ୍ଜୁ, ହାତରେ ବାଡ଼ହାତ ଖଣ୍ଡା । ସେ ଦେଖିଲେ 'ସାବ୍ରା' ଭଳି ସୁନ୍ଦରୀ ରାଜକୁମାରୀଟିଏ କାନ୍ଦି କାନ୍ଦି ଯାଉଛି । ତା ସାଙ୍ଗରେ ଆଉ ସମସ୍ତେ ବି କାନ୍ଦୁଛନ୍ତି । ସେ ଶୁଣିଲେ, ଗୋଟାଏ ଡ୍ରାଗନ 'ସାବରା'କୁ ଖାଇଯିବ ? ଇଏ ପୁଣି କି କଥା ? ଘୋଡ଼ା ଝପଟାଇ ଦେଲେ ଜର୍ଜ । ଡ୍ରାଗନ ଓ ଜର୍ଜର ଖୁବ୍ ଲଢ଼େଇ ହେଲା । ଡ୍ରାଗନର ମୁଣ୍ଡକାଟି ଦେଲେ ଜର୍ଜ ।

ରାଜକୁମାରୀ ସାବ୍ରା ବାହାହେଲେ ଜର୍ଜକୁ । ଡ୍ରାଗନ ମରିଗଲା ବୋଲି ପୃଥିବୀ ଶାନ୍ତ ହେଲା ।

ଠିକ୍ ଏମିତି ଆଉ ଗୋଟିଏ କାହାଣୀ । ବୀର ପରସିଅସ ରାଜକୁମାରୀ ଆଣ୍ଡ୍ରୋମେଡ଼ାକୁ ରକ୍ଷା କରିଥିଲେ ଅତିକାୟ ଗୋଟାଏ ଡ୍ରାଗନ 'ମେଡୁସା'କୁ ହତ୍ୟାକରି.... ।



ଡ୍ରାଗନ ଯେ ଖାଲି ହିଂସ୍ର ଥିଲେ ତା ନୁହେଁ । ଅତ୍ୟାଚାରୀ ଡ୍ରାଗନ ଥିଲେ । ଶାନ୍ତ ଓ ଶୁଭଙ୍କରୀ ଡ୍ରାଗନ ବି ଥିଲେ । ଡ୍ରାଗନର ଚାବୁକ୍ ଭଳି ଲାଞ୍ଜ, କାତିଆ ଦେହ । ଫୁତ୍କାରରେ ତା'ର ନିଆଁ । ଇଚ୍ଛାକଲେ ଅନ୍ଧାରରେ ମିଶିଯାଏ । ଛୋଟିଆ ପୋକଟିଏ ହୋଇଯାଏ । ପ୍ରଜାପତି ହୋଇଯାଏ । ଡ୍ରାଗନ ନଈ ଭିତରେ ଯୁଦ୍ଧ କଲାବେଳେ ନଈବଢ଼ି ହୁଏ । ଆକାଶରେ ଲଢ଼େଇ କଲାବେଳେ ତୋଫାନ ବହେ । ମାଟିତଳେ ଯୁଦ୍ଧ ହେଲେ ଭୂମିକମ୍ପ ହୁଏ । ପାହାଡ଼ିଆ ନଈଝରଣା କୂଳରେ ଗୋଲ ଗୋଲ ଗୋଡ଼ି ସବୁ କୁଆଡ଼େ ଡ୍ରାଗନର ଫାଟି ନ ଥିବା ଅଣ୍ଡା । ସେ ଅଣ୍ଡା ଫାଟିଲେ ବଜ୍ରନାଦ ହେବ । ଡ୍ରାଗନର ଛୁଆ ଛିଟିକି ଯିବ ଆକାଶକୁ । ଡ୍ରାଗନ ଜଗିରହେ ସୁନା ହୀରାର ଖଣିକୁ । ଜଗିଥାଏ ଗାଆଁକୁ ଓ ରାଜ୍ୟକୁ ।

ଚୀନଦେଶରେ ଘରେ ଘରେ 'କଙ୍ଗଲଙ୍ଗ'ର କାହାଣୀ ଶୁଣିବାକୁ ମିଳେ । ତିନିଶ' ଖ୍ରୀଷ୍ଟାବ୍ଦରେ ଚିଆଙ୍ଗ କିଉ ବୋଲି ଜଣେ ଲେଖକ ଗପଟିଏ ଲେଖିଥିଲେ –

''ଥରେ ଗୋଟିଏ କଙ୍ଗଲଙ୍ଗ ପାହାଡ଼ ଚଢ଼ିଲା । ସେ ପାହାଡ଼ ଲାଗିଥାଏ ସ୍ୱର୍ଗକୁ । ସେ ଭାବିଲା ସ୍ୱର୍ଗକୁ ଯିବ । ମାତ୍ର ସ୍ୱର୍ଗର ଫାଟକ ବନ୍ଦ ଥିଲା । କଙ୍ଗଲଙ୍ଗର ରାଗ ହେଲା । ସେ ତା' ଟାଣୁଆ ମୁଣ୍ଡରେ ଫାଟକକୁ ଧକ୍କା ମାରିଲା । ଆକାଶରେ ଘଡ଼ଘଡ଼ି ଶୁଭିଲା । ସ୍ୱର୍ଗର ଫାଟକ ସେ କ'ଣ ଏତେ ସହଜରେ ଖୋଲିଯାଆନ୍ତା କି ଆଉ ! କଙ୍ଗଲଙ୍ଗଟା ମୁଣ୍ଡିଆ ମାରି ମାରି ଖସି ପଡ଼ିଲା ପୃଥିବୀ ଉପରେ । କାଳକ୍ରମେ ସେ ମାଟିରେ ପୋତି ହୋଇଗଲା । ତାକୁ ସେଇଦିନଠୁ କେହି ଆଉ ଦେଖିଲେ ନାହିଁ ।''

ମାଟି ଖୋଳିଲାବେଳେ ବଡ଼ ବଡ଼ ହାଡ଼ଖଣ୍ଡମାନ ବାହାରେ ସିଚୁଆନ ଗାଁରେ । ୟୁନାନ ପ୍ରଦେଶରେ, ଦଶାମ୍ପୁ ଖଣିରେ । ଲୋକେ ମନେ କରନ୍ତି ସେ ସବୁ ହାଡ଼ କୁଆଡ଼େ ଡ୍ରାଗନର...କଙ୍ଗଲଙ୍ଗର... । ଗାଆଁର ଚାଷୀମାନେ ମନେ କରନ୍ତି ଯେ ସେ ହାଡ଼କୁ ଘୋରି ପିଇଲେ ଦିହରେ ବଳ ହୁଏ । ଚନ୍ଦନ କରି ଦେହରେ ଲେପିଲେ ବିପଦ ପଡ଼େ ନାହିଁ । ଘୁଷୁରୀଶାଳ ପାଚେରୀରେ ସେଇ ହାଡ଼ରୁ ଖଣ୍ଡେ ରଖିଲେ ଘୁଷୁରୀମାନଙ୍କୁ ରୋଗ ହୁଏ ନାହିଁ । ଘୁଷୁରୀମାନଙ୍କ ଉପରେ ବିପଦ ପଡ଼େ ନାହିଁ । ରାତିରେ କଙ୍ଗଲଙ୍ଗ କୁଆଡ଼େ ଜଗେ ଘୁଷୁରୀଙ୍କୁ...... ।




ଆଈ ମା' ଗପ କହିଲାବେଳେ ଦିହ ଶିତେଇ ଉଠେ । ଗପ ତ ଗପ, ସିଏ ତ ଆଉ ସତକଥା ନୁହଁ ? ମାତ୍ର ମାଟି ଖୋଳୁ ଖୋଳୁ ଅତିକାୟ ହାଡ଼ମାନ ମିଳିଲେ ଆଶ୍ଚର୍ଯ୍ୟ ହେବାର ଅଛି । ସେ ହାଡ଼ ତେବେ କାହାର ? ଅସୁରର.... ଡ୍ରାଗନର....ନା....କଙ୍ଗଲଙ୍ଗର.....?

ସାରା ପୃଥିବୀରେ କାହାଣୀ ସରେ ନାହିଁ । କାହାଣୀ ପେଡ଼ିରେ କାହାଣୀ ଆଉ କାହାଣୀ । ଯେମିତି ଫରୁଆ ଭିତରେ ଫରୁଆ । ଫରୁଆ ଭିତରେ ପୋକ....ସିଏ କୁଆଡ଼େ ଅସୁରର ଜୀବନ । ତାକୁ ଯଦି ମାରିବ, ଅସୁରଟା ଚିତ୍କାର କରି କଚାଡ଼ି ହୋଇ ମରିବ ।

କାହାଣୀ ଭିତରେ କାହାଣୀ । ବିଜ୍ଞାନୀ ଖୋଜି ପକାଏ କାହାଣୀର ମଞ୍ଜି କେଉଁଠି ? ସେଇ ମଞ୍ଜି ଭିତରେ ଅଛି ଅସଲ ରହସ୍ୟ । ମାଟିରେ ନ ମିଶି କେଉଁ ଗୋଟାଏ ଜୀବର ଅସ୍ଥି ରହିଯାଇଛି କେଉଁକାଳୁ । ସେଇ ମାଟିତଳର ଅସ୍ଥିମାଳ ଅତିକାୟ ଜୀବନର ଗାଥାଣି ଗାଉଛି । ଅତିକାୟ ସରୀସୃପର କାହାଣୀ । କିଛି ସତ୍ୟ...କିଛି କଳ୍ପନାର କାହାଣୀ..... ।

ମାଟିତଳୁ ହାଡ଼ ମିଳୁଛି ବୋଲି ସିନା କଳ୍ପନା ଅମୂହାଁ ମାଡ଼ିଯାଉଛି । ଯୁଗ ଯୁଗ ଧରି ଆଈମା' କାହାଣୀରେ ଯେଉଁସବୁ ଅସୁର, ଡ୍ରାଗନ ବା କଙ୍ଗଲଙ୍ଗର କଳ୍ପନା ଆସିଥିଲା; ସେ ସବୁ କଳ୍ପନା ଆସିଲା କେମିତି ? କେହି କେହି କହନ୍ତି ସେ ସବୁ ଲୋକକଥା, ମନଗଢ଼ା, ଚମତ୍କାରୀ ଗପ । କେହି କହନ୍ତି 'ସରୀସୃପୀୟ ଚେତନା'ର ହୁଏତ ଏହା ଏକ ପ୍ରତିଫଳନ ।

କ'ଣ ସେଇ 'ସରୀସୃପୀୟ ଚେତନା' ?

ଡାରଉଇନ କହୁଥିଲେ, ଜେଲି ଫିସରୁ ଜୀବନ ଆସିଲା ପ୍ରଥମେ ଜଳରେ । ତାପରେ ଶରୀରକୁ ଘୋଷାରି ସେ ହେଲା ଉଭୟଚର.... । ସ୍ଥଳରେ ଯେଉଁ ଜୀବନ ରହିଲା ସେ ଯଦି ଡାଇନୋସର ହୁଏ, ତେବେ ସ୍ତନ୍ୟପାୟୀ ମଣିଷର ଜିନ୍‌ରେ ହୁଏତ ଅତୀତର କଥା ଅନ୍ତର୍ମୁଦ୍ରିତ ହୋଇଥାଇପାରେ । 'ଆଖି'ର ସୃଷ୍ଟି ହେବା ଆଗରୁ ଦୃଶ୍ୟ ଚେତନା **(Sense of vision)** ସୃଷ୍ଟି ହୋଇଥିଲା । ସୁପରସୋନିକ ତରଙ୍ଗ, ଆଗରେ ଥିବା ଜୀବ ବା

ବସ୍ତୁର ଆକୃତି ଓ ପ୍ରକୃତି ସଂପର୍କରେ ଅବଚେତନ ମନରେ ଧାରଣା ସୃଷ୍ଟି କରୁଥିଲା । ଆଖି ନ ଥାଇ ବି ଜାଣି ହେଉଥିଲା କିଏ ବନ୍ଧୁ...କିଏ ବନ୍ଧ । ସରୀସୃପ ଜାଣି ପାରୁଥିଲା ଆଗରେ ବିପଦ ଅଛି, ସାପଟିଏ ଅଛି, ବେଙ୍ଗ ବା ଏଣ୍ଡୁଅଟିଏ ବସିଛି । ସେଇ ଅଦୃଶ୍ୟ ସଂଯୋଗ ହିଁ ସରୀସୃପୀୟ ଚେତନା **(Serpentine Consciousness)** । ଏହାରି ଯୋଗୁ ମନକୁ ଆସେ ଅନେକ ଉଦ୍ଭଟ ରୂପ ଓ ଚିତ୍ରକଳ୍ପ ।

ହୁଏତ ସାରା ପୃଥିବୀରେ ଯେତେସବୁ ଗଳ୍ପ ଓ କାହାଣୀ ଅସୁର, ଡ୍ରାଗନ ଓ କଙ୍ଗଲଙ୍ଗକୁ ନେଇ.... ସେ ସବୁ ଜାଣତରେ କି ଅଜାଣତରେ ଅତୀତର ହଜିଲା କଥା... । ସେଇ ବିରାଟ ଭୟଙ୍କର ଜୀବନର କିଛିତ୍ ସତକଥା ।

ଅତୀତରେ ଡ୍ରାଗନ ଯେ ଥିଲା, ଅସୁର ଓ କଙ୍ଗଲଙ୍ଗ ଯେ ଥିଲା ତା'ର ପ୍ରତ୍ୟକ୍ଷ ପ୍ରମାଣ ମାଟିତଳୁ ମିଳିଯାଉଥିବା କଙ୍କାଳ, ଖପୁରୀ ଓ ଜୀବାଶ୍ମ ।

ହାତରେ ପ୍ରମାଣ ଥାଇ ଯେଉଁ ସତ୍ୟ କୁହାଯାଏ ତାହା ବିଜ୍ଞାନ । ବିଜ୍ଞାନକୁ ଜୀବନ୍ତ କରେ- କଳ୍ପନା, ଚମତ୍କାରୀ ଭାବନା ଓ ଯୁକ୍ତିସିଦ୍ଧ କାହାଣୀ ।

ଡାଇନୋସରର କାହାଣୀ ଏକ ଯୁକ୍ତିସିଦ୍ଧ କଥା । ତେଣୁ ଚମତ୍କାର...ମନଲୋଭା.... ଠିକ୍ କାହାଣୀ ଭଳି ।



## ମାଟି ତଳ ହାଡ଼ : ମ୍ୟାରି ଓ ଡାଇନୋସର

ଇଂଲଣ୍ଡରେ ଗଢ଼ିଉଠୁଥିଲା ସହରଟିଏ... ସସେକ୍ସ । ସେ ସମୟ ୧୮୨୦ ଖ୍ରୀଷ୍ଟାବ୍ଦ । ଡାକ୍ତର ଗିଡ଼େଅନ ମଣ୍ଟେଲ ଓ ତାଙ୍କ ସ୍ତ୍ରୀ ମ୍ୟାରି ଥିଲେ ସେଇ ସହରର ବାସିନ୍ଦା । ରାସ୍ତା ତିଆରି ପାଇଁ ମାଟି ଖୋଳା ହେଉଥିଲା । ମାଟିତଳୁ ଖୁବ୍ ବଡ଼ ଖଣ୍ଡେ ହାଡ଼ ମିଳିଲା । ହାଡ଼ନୁହେଁ ମୁନିଆ ଦାନ୍ତଟିଏ । କୌତୂହଳରେ ମ୍ୟାରି ଦାନ୍ତଟିକୁ ଆଣି ସ୍ୱାମୀଙ୍କୁ ଦେଖେଇଲେ ।

କାହାର ବା ହୋଇଥିବ ସେଇ ଦାନ୍ତଟି ? ସହରରେ ଗୁଜବ ରଟିଗଲା....ଡ୍ରାଗନର ଦାନ୍ତ ମିଳିଛି । ମଣ୍ଟେଲ ସ୍ୱାମୀ-ସ୍ତ୍ରୀ ସେଇ ଦାନ୍ତକୁ ନିରେଖି ଦେଖିଲେ । ମନକୁ କାହିଁ କେତେ କଳ୍ପନା ଆସିଲା । ଏତେ ବଡ଼ ଦାନ୍ତ ଯେଉଁ ଜୀବର, ସେ କେଡ଼େ ବିରାଟକାୟ ହୋଇଥିବ ?

୧୮୨୫ ରେ ଅର୍ଥାତ୍ ଦାନ୍ତଟି ପାଇବାର ୫ ବର୍ଷପରେ ସେମାନେ ପୃଥିବୀକୁ ନୂଆକଥାଟିଏ





ମ୍ୟାରି ପାଇଥିବା ଦାନ୍ତକୁ ଭିତ୍ତିକରି କଳ୍ପିତ 'ଇଗୁଆନୋଡନ'

କହିଲେ । ନିୟୁତ, ନିୟୁତ ବର୍ଷତଳେ ପୃଥିବୀରେ ବାସକରୁଥିବା ଏକ ଅତିକାୟ 'ଇଗୁଆନା' ବା ଏଣ୍ଡୁଅର ସେ ଥିଲା ଦାନ୍ତ । କଳ୍ପନାର ଚିତ୍ରଟିଏ ଆଙ୍କି ହୋଇଗଲା । ସେମାନେ ସେଇ କଳ୍ପିତ ଜୀବର ନାଆଁ ଦେଲେ ''ଇଗୁଆନୋଡ଼ନ'' ।

'ଇଗୁଆନୋଡ଼ନ'କୁ ଡାଇନୋସର ଇତିହାସର ପ୍ରଥମ ଶବ୍ଦ ବୋଲି କୁହାଯାଏ ।

ବାଇବେଲରେ ବର୍ଣ୍ଣିତ ବନ୍ୟାରେ ମୃତ କୌଣସି ପଶୁର ହାଡ଼ ହୋଇଥିବ ଭାବି ଡଃ ମଣ୍ଟେଲଙ୍କର ତଥ୍ୟକୁ ସେତେବେଳେ କେହି ଗୁରୁତ୍ୱ ଦେଲେ ନାହିଁ । ୧୮୧୮ ଖ୍ରୀଷ୍ଟାବ୍ଦରେ ଉଇଲିୟମ ବକ୍‌ଲ୍ୟାଣ୍ଡ ଖଣି ଶ୍ରମିକଙ୍କ ପାଖରୁ ଗୋଟିଏ ଅତିକାୟ ଜୀବର ତଳମାଡ଼ି ପାଇଥିଲେ । ସେ ପ୍ରଥମେ ବୁଝିପାରି ନଥିଲେ ଏହି ହାଡ଼ଖଣ୍ଡଟି କାହାର ? ୧୮୨୪ ରେ ସେ ଏହାକୁ ଏକ ଅତିକାୟ ସରୀସୃପର ମାଢ଼ି ବୋଲି କହିଥିଲେ । ପ୍ରକୃତରେ ଏହା ଥିଲା ପ୍ରଥମ ଡାଇନୋସର 'ମେଗାଲୋସରସ'ର । ଏହି କଙ୍କାଳକୁ କୁହାଯାଏ 'ମେଗାଲୋସରସ ବକ୍‌ଲାଣ୍ଡି' । କେତେକଙ୍କ ମତରେ ୧୬୭୬ରେ ଏହି ମେଗାଲୋସରସର ଅସ୍ଥି ମିଳିଥିଲା । ମାତ୍ର ତାହାକୁ ଏକ ଅତିକାୟ ମଣିଷର ଜଂଘ ହାଡ଼ ବୋଲି କୁହାଯାଉଥିଲା ।

ବ୍ରିଟେନର 'ନାଚୁରାଲ ହିଷ୍ଟ୍ରି ମ୍ୟୁଜିୟମ'ରେ ସେ ଦିନର ସେଇ ପ୍ରଥମ ହାଡ଼ଗୁଡ଼ିକ ସାଇତା ହୋଇ ରହିଛି । 'ମେଗାଲୋସରସ'ର କଙ୍କାଳଟିକୁ ଅକ୍ସଫୋର୍ଡ଼ର ୟୁନିଭର୍ସିଟି ମ୍ୟୁଜିୟମରେ ରଖାଯାଇଛି ।

ଘରତୋଳା ପାଇଁ ଆମେରିକାର ନିଉ ଜର୍ସି ସହରରେ ମାଟି ଖୋଳାବେଳେ ମଧ୍ୟ ବଡ଼ ବଡ଼ ହାଡ଼ ଓ ଦାନ୍ତ ମିଳିଥିଲା । ସେ ସବୁ ହାଡ଼ ମଇଁଷି ଓ ହାତୀର ହାଡଠୁ ଆହୁରି ବଡ଼ । କାହାର ସେ ହାଡ଼ ? କୌତୂହଳୀ ହେବା ସାଧାରଣ କଥା । ତେବେ ମନତଳେ ଉଠିଥିବା ପ୍ରଶ୍ନ ଯେତେବେଳେ ସମାଧିତ ହୋଇ ପାରିଲା ନାହିଁ, ସେଇ ହାଡଗୁଡିକୁ ସେମାନେ ଫିଙ୍ଗି ଦେଲେ । ପଡିଶା ଘରର କେହି କେହି ଆଗ୍ରହରେ ସେ ହାଡ଼କୁ ସଂଗ୍ରହ କରିନେଲେ । କିଏ କବାଟ କିଳିବାକୁ ହାଡ଼ଖଣ୍ଡେ ରଖିଲା, ତ କିଏ ଟେବୁଲରେ କାଗଜ ଚାପା ପାଇଁ ତାକୁ ସୌଖିନରେ ସାଇତି ରଖିଲା ।



ଫିଲାଡେଲଫିଆରେ ସେତେବେଳେ ଜଣେ ପ୍ରତ୍ନତତ୍ତ୍ୱବିତ୍ ରହୁଥିଲେ । ତାଙ୍କର ନାମ ଡଃ ଲେଯିଡି । ସେ ଶୁଣିଥିଲେ ଯେ ଇଂଲଣ୍ଡରେ ଏହିଭଳି ବିରାଟକାୟ ଜୀବର ହାଡ଼ମାନ ମିଳିଛି ଓ କୁହାଯାଉଛି ଯେ ତାହା ଡାଇନୋସରର ହାଡ଼ । ସେ ତେଣୁ ନିଉଜର୍ସିକୁ ଧାଇଁଲେ । ହାଡଗୁଡ଼ିକୁ ବହୁକଷ୍ଟରେ ସଂଗ୍ରହ କରି ରଖିବାକୁ ଲୋକେ ତାଙ୍କୁ ସହଯୋଗ କରିଥିଲେ ।

## ମଣ୍ଡାରି

## ଡାଇନୋସର

ଡଃ ଲେୟିଡ଼ ସେଇ ହାଡଗୁଡ଼ିକୁ ଏକାଠି କରି ଖୁବ୍ ବଡ଼ କଙ୍କାଳଟିଏ ତିଆରି କଲେ । ସେଇ କଙ୍କାଳକୁ କୁହାଗଲା 'ବତକମୁହାଁ ଡାଇନୋସର' ।

ଡାଇନୋସରସ ଏକ ପ୍ରାଚୀନ ଗ୍ରୀକ୍ ଶବ୍ଦ । **'ଡାଇନୋ'** କହିଲେ ବୁଝାଯାଏ **'ଭୟଙ୍କର'** । **'ସରସ' ଅର୍ଥ ସରୀସୃପ ବା ଗୋଧି** । ଇଂରାଜୀରେ **ଡ଼ାଇନୋସର କହିଲେ ବୁଝାଏ 'ଭୟଙ୍କର ଗୋଧି'** । **ମାଟିତଳୁ ମିଳୁଥିବା ହାଡ଼ ବା ଜୀବାଶ୍ମ ମାନଙ୍କୁ ଚିହ୍ନାଇବା ପାଇଁ ରିଚାର୍ଡ ଓଏନ ୧୮୪୧ରେ ଏହି ଡାଇନୋସର** ଶବ୍ଦଟିକୁ ସୃଷ୍ଟିକଲେ । ସେହି ଦିନଠୁ 'ଭୟଙ୍କର ଗୋଧି'ଙ୍କୁ କୁହାଯାଉଛି **'ଡାଇନୋସର'** ।

ମାଟିତଳେ ପୋତି ହୋଇ ରହିଛି ଅତିକାୟ ସରୀସୃପମାନଙ୍କର ହାଡ଼ । ଚୀନର ଗୋବି ମରୁଭୂମି, ଆର୍ଜେଣ୍ଟିନା କଡେ କଡେ ଆଣ୍ଡସ ପର୍ବତମାଳାର ପାଦଦେଶ, ଥାଇଲାଣ୍ଡ ଓ ଲାଓସର ଅରଣ୍ୟ, ଉତ୍ତର ପଶ୍ଚିମ ଆର୍ଜେଣ୍ଟିନାରେ 'ଇସ୍‌ଚିଗୁଆଲାସ୍ତୋ', ଚୀନର ଜିଗଙ୍ଗ୍ ପ୍ରଦେଶରେ 'ଦଶାମ୍ପୁ,' ଆମେରିକାର ପଶ୍ଚିମ ପାର୍ବତ୍ୟ କଙ୍କର, ଦକ୍ଷିଣ ଡାକୋଟା ଓ ମଣ୍ଟାନା, ମେକ୍ସିକୋର ୟୁକାତାନ୍ ଅନ୍ତରୀପ, ଦକ୍ଷିଣ ଅଷ୍ଟ୍ରେଲିଆର ଆର୍କଟିକ ସର୍କଲ ଡାଇନୋସରମାନଙ୍କ ଜୀବାଶ୍ମ ପାଇଁ ବିଖ୍ୟାତ । ବ୍ରାଜିଲ୍, ମରକୋ, ସ୍କଟଲ୍ୟାଣ୍ଡ ଓ ଭାରତରୁ ପ୍ରାଚୀନତମ ଡାଇନୋସରମାନଙ୍କର ଅବଶେଷ ମିଳିଛି । ମାତ୍ର ପୂର୍ଣ୍ଣ ଅବୟବ ମିଳି ନ ଥିବାରୁ ସବିଶେଷ ତଥ୍ୟ ମିଳେ ନାହିଁ ।

ଆମ ଭାରତବର୍ଷରେ ଅହମଦାବାଦଠୁ ମାତ୍ର ଶହେ କିଲୋମିଟର ଦୂରରେ ଅଛି ଗାଆଁଟିଏ । ଗାଆଁର ନାଆଁ 'ରାହିଓଲି' । ସେଠାରେ ଡାଇନୋସରର ଅଶ୍ମିଭୂତ ଅଣ୍ଡା ଓ ହାଡ ମିଳିଛି । ଟ୍ରାଇସିଆକ୍ ଯୁଗରେ ଯେତେବେଳେ ଭାରତ ବି 'ପାଂଗିଆଖଣ୍ଡ'ରେ ଲାଗି ରହିଥିଲା । ଡାଇନୋସରମାନେ ଚଳପ୍ରଚଳ କରୁଥିଲେ ଆମ ମାଟିରେ । ମାଟିତଳୁ ମିଳିଥିବା ସେଇ ସବୁ ହାଡ଼ ସେ କଥାର ସୂଚନା ଦେଇସାରିଲାଣି ।



ବତକମୁହାଁ ଡାଇନୋସରର କଙ୍କାଳ







ଓଥନିଏଲ ମାର୍ସ



ଏଡ୍‌ୱାର୍ଡ ଡ୍ରିଙ୍କର କୋପ୍

# ଡାଇନୋସର ପାଇଁ କଳି ଓ ମକଦ୍ଦମା

ମାଟିତଳେ ଅତିକାୟ ଜୀବମାନଙ୍କର ହାଡ଼, କଙ୍କାଳ ପୋତି ହୋଇ ରହିଛି ବୋଲି ଆମେରିକାରେ ଚହଳ ପଡିଗଲା । 'ଡାଇନୋସର' ନିଶା ମାଡି ଆସିଲାଣି ସେତେବେଳକୁ । ନୂଆକଥା, ଖୋଜିବା ଓ ଟଙ୍କା ରୋଜଗାର ଆମେରିକାର ସଂସ୍କୃତି । ୧୮୭୦ରୁ ଅଶି ଦଶକ ଯାଏ ଓ.ସି. ମାର୍ସ ଏବଂ ଏଡ଼ୱାର୍ଡ କୋପ୍ ଲୋହିତ ଭାରତୀୟ ଓ ଅନ୍ୟ କଙ୍କାଳ ସଂଗ୍ରହକାରୀମାନଙ୍କ ସହ ଯୁଦ୍ଧ ଘୋଷଣା କରିସାରିଥିଲେ । ଡାଇନୋସରର ଜୀବାଶ୍ମ ଓ କଙ୍କାଳ ପାଇଁ ବନ୍ଧୁକ ଫୁଟିଛି । ଅନେକ କୁତ୍ସିତ ଚତୁରତା, ପରସ୍ପର ଭିତରେ ଅପପ୍ରଚାର ଓ ସୁନାମ ପାଇଁ ଘୋଡ଼ାଦୌଡ଼ ଭିତରେ ଡିପ୍ଲୋଡ଼ୁକସ, ଷ୍ଟେଗୋସରସ, 'ଟ୍ରାଇସେରେଟପସ' ଭଳି ଚମତ୍କାର ଡାଇନୋସର ସଂପର୍କରେ ତଥ୍ୟ ମିଳି ପାରିଥିଲା । ମାର୍ସ 'ବ୍ରନ୍-ଟୁ-ସରସ'ର ଆବିଷ୍କାର ମଧ୍ୟ କରି ପାରିଥିଲେ । କୁହାଯାଏ ଏହି କଙ୍କାଳ-ପାଗଳ ବିଜ୍ଞାନୀମାନେ ମୋଟ ୧୩୬ଟି ନୂତନ ଡାଇନୋସରମାନଙ୍କ ଅସ୍ଥି ସଂଗ୍ରହ କରିଥିଲେ ।

ଡାଇନୋସର ଅସ୍ଥିକୁ ସାଇତି ରଖୁଥିବାରୁ ନିନ୍ଦିତ ଓ ଭର୍ତ୍ସିତ ହୋଇଥିଲେ ଜର୍ମାନର ପ୍ରତ୍ନତତ୍ତ୍ୱବିଦ୍ ହରମ୍ୟାନ ଜେଗର୍ । ତାଙ୍କ ହାତରେ ତିଆରି ଡାଇନୋସର ଗ୍ୟାଲେରିର ଗୋଟିଏ ଅଂଶ ଦ୍ୱିତୀୟ ବିଶ୍ୱଯୁଦ୍ଧବେଳେ ବୋମାମାଡ଼ରେ କ୍ଷତିଗ୍ରସ୍ତ ହୋଇଥିଲା । ୧୯୦୯ ଓ ୧୯୧୨ ମସିହାରେ ଆଫ୍ରିକାରୁ ଦୁଇଟି 'ବ୍ରାକିଓସରସ'ର ଅସ୍ଥିଗୁଡ଼ିକୁ ଆଣି ସେ ଠିଆ କରେଇଥିଲେ ସେଇ ଗ୍ୟାଲେରିରେ । ସେଇ ଡାଇନୋସରର କଙ୍କାଳକୁ ଖୋଲିଖାଲି ଦେଇ ଜାପାନକୁ ବିକିଦେବା ଲାଗି ୧୯୮୪ରେ ତାଙ୍କ ଦେଶର ସରକାର ତାଙ୍କୁ ବାଧ କରିଥିଲା । ତାଙ୍କର ଜଳ ଜଳ ହୋଇ ମନେ ଅଛି ସେଦିନର କଥା । ଡାଇନୋସରର ଅସ୍ଥିଗୁଡ଼ିକୁ ବିକିବାକୁ ଅମଙ୍ଗ ହୋଇଥିଲେ ବୋଲି ସେ ଦଣ୍ଡ ପାଇଛନ୍ତି, ଅପମାନିତ ହୋଇଛନ୍ତି, ଭୟ ଓ ଧମକର ସାମନା କରିଛନ୍ତି ।



୧୯୯୨ର ମେ ମାସ । 'ସୁ' ହେଣ୍ଡ୍ରିକ୍‌ସନ ଦକ୍ଷିଣ ଡାକୋଟାରୁ ଆବିଷ୍କାର କଲେ ଏକ ଅତି ଭୟଙ୍କର 'ଟିରାନୋସରସ ରେକ୍ସ'ର କଙ୍କାଳ । ଏହି ରେକ୍ସର ଶ୍ରଦ୍ଧାନାଆଁ ଦିଆଗଲା 'ସୁ' । ହଠାତ୍ ଖବରଟିଏ ପ୍ରକାଶ ପାଇଥିଲା ଯେ ଫେଡ଼େରାଲ ଏଜେଣ୍ଟମାନେ 'ସୁ' କୁ ଜବତ୍ କରିଛନ୍ତି । ବିବଦମାନ ହୋଇ ଉଠିଥିଲା ଡାଇନୋସରର କଙ୍କାଳଟି ।

ରାପିଡ୍ ସହର ନିକଟରେ ଗୋଟିଏ ଖଣିରୁ 'ସୁ'ର ଅସ୍ଥିକୁ ନିଷ୍କାସିତ କରିଥିଲେ ''ବ୍ଲାକ୍ ହିଲ୍‌ସ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଜିଓଲୋଜିକାଲ୍ ରିସର୍ଚ୍ଚ''ର ଅନୁସନ୍ଧାନକାରୀ ଦଳ । 'ସୁ'ର ଆବିଷ୍କାର ପରେ ଜନରବ ହେଲା ଯେ ଏହି ଡାଇନୋସର କଙ୍କାଳଟିର ମୂଲ୍ୟ ହେବ ଅନେକ ନିୟୁତ ଡଲାର୍ । କୌଣସି ମ୍ୟୁଜିୟମପକ୍ଷରେ ଏତେ ଅଧିକ ମୂଲ୍ୟ ଦେବା ସମ୍ଭବ ନୁହେଁ । ଚେନେ ନଦୀକୂଳର 'ସିଓସ୍କ' ଆଦିବାସୀମାନେ ଦାବୀକଲେ ଯେ 'ସୁ' ମିଳିଥିବା ଅଞ୍ଚଳ ସେମାନଙ୍କର । ତେଣୁ 'ସୁ'ର ଜୀବାଶ୍ମ ଉପରେ ସେମାନଙ୍କର ଅଧିକାର ରହିଛି । ମାତ୍ର ଏହି ଅଞ୍ଚଳକୁ ଜଣେ ଘରୋଇ ମାଲିକ ଆବାଦ କରିଥିବାରୁ ସେ ଏହାକୁ ବିକିଛନ୍ତି ଓ ଇନ୍‌ଷ୍ଟିଚ୍ୟୁଟ୍ ଆବଶ୍ୟକ ପ୍ରାପ୍ୟ ଦେଇଥିବାରୁ 'ସୁ'ର ଜୀବାଶ୍ମ ସେମାନଙ୍କର ପ୍ରାପ୍ୟ ବୋଲି ଦାବୀ କରନ୍ତି । କଳି ଯୋଗୁ 'ସୁ' ବିବାଦର ଘେରରେ ରହିଛି । ଆମ ଯୁଗରେ ଏହା ହେଉଛି 'ମାନବୀୟ ଆବିଷ୍କାର ଜନିତ ପ୍ରଥମ ମକଦ୍ଦମା' । ଡାଇନୋସର ପାଇଁ ପ୍ରଥମ କଳି ଓ ମକଦ୍ଦମା ।



ବାଲିପଥର ଭିତରୁ 'ପିଟେ' ଏବଂ 'ଲାର୍‌ସନ' ଟିରାନୋସରସ ରେକ୍ସର ଖପୁରୀକୁ ଖୋଳି ବାହାର କରୁଛନ୍ତି । ଲାରସନଙ୍କର ଜଣେ ବନ୍ଧୁ 'ସୁ' ଏହି ରେକ୍ସର ଜୀବାଶ୍ମଟିକୁ ପ୍ରଥମେ ଚିହ୍ନଟ କରିଥିଲେ ବୋଲି ଏହାର ନାଆଁ ରଖାଯାଇଛି 'ସୁ' । ଏହି କଙ୍କାଳର ମାଲିକାନା ପାଇଁ ଏବେ ମକଦ୍ଦମା ଚାଲିଛି ।

## ।। ମଶା
## ଓ
## ଡାଇନୋସରର ରକ୍ତ ।।

ମଶାଟା ଏତେ ରକ୍ତ ପିଇଥିଲା ଯେ ଆଉ ଉଡିପାରୁ ନ ଥିଲା । ପାଣି ଭିତରେ ପଶି ବ୍ରାକିଓସରସ ଲଟାପତ୍ର ଖାଉଥିଲା କଚକଚ କରି । ଲମ୍ବା ବେକଟା ବେଳେବେଳେ ଉଠିଯାଉଥିଲା ପାଣିକୂଳରେ ଥିବା ଗଛରୁ ପତ୍ର ଖାଇବାକୁ । ପିଠିଟା ପାଣି ଉପରକୁ ଉଠି ରହିଥିଲା ଠିକ୍ ଗୋଟାଏ ଟାପୁ ଭଳି । ସେଇ ପିଠି ଉପରେ ବସି ମଶା ରକ୍ତ ପିଉଥିଲା । ପିଉ ପିଉ ଏତେ ପିଇଦେଲା ଯେ ଆଉ ଉଡିଯାଇ ପାରିଲା ନାହିଁ । ବ୍ରାକିଓସରସ ପାଣି ଭିତରୁ ଉଠି ଆସିଲା । ଗୋଟାଏ ବିରାଟ ଗଛ ଦେହରେ ପିଠି ଘଷି ହେଲା । ମଶାଟା ପାଇଁ ଏହା ହିଁ ଥିଲା ମଉକା । ବଡକଷ୍ଟରେ ବ୍ରାକିଓସରସର ପିଠି ଉପରୁ ମଶାଟି ଡେଇଁ ପଡିଲା ଗଛର ଗଣ୍ଡି ଉପରକୁ । ବ୍ରାକିଓସରସର ପିଠି ଘଷାରେ ଗଛର ବଲ୍‌କଳ ଛିଣ୍ଡିଗଲା... ଅଠାଳିଆ କ୍ଷୀର ଥପ୍ ଥପ୍ ହୋଇ ବହିଲା ।







ବିଚରା ମଶା କ'ଣ ଜାଣିଥିଲା ଯେ ସେଇ ଅଠାଳିଆ କ୍ଷୀରରେ ତା'ର ମରଣ ଅଛି ? ସହଜେ ତ ପିଇ ପିଇ ଥାକୁଲା ହୋଇଯାଇଥିଲା । ବିଶ୍ରାମ ପାଇଁ ନିରାପଦ ଜାଗାଟିଏ ଖୋଜି ଗୋଡ଼ ପକଉ ପକଉ ଅଠାରେ ଗୋଡ଼ ତା'ର ଛନ୍ଦି ହୋଇଗଲା ।

ବ୍ରାକିଓସରସ ଦେଖିଲା ଦୂରରେ ଗୋଟାଏ ପ୍ରୋଟୋସେରେଟପ୍ସ । ଶୁଆଥଣ୍ଟିଆ ସେଇ ଡାଇନୋସରକୁ ତା'ର ଭାରି ଡର । ଚିରି ପକାଏ ଦିହ ହାତ । ପଛକୁ ଚାହୁଁଥିଲା 'ପ୍ରୋଟୋସେରେଟପ୍ସ' । ଗଛପତ୍ର ହଲିଲା । ହେଣ୍ଟାଳ ଶୁଭିଲା । ବୋଧହୁଏ ଟିରାନୋସରସ ରେକ୍ସ ଶୀକାର ପାଇଗଲା । ବ୍ରାକିଓସରସ ପୁଣି ପାଣି ଭିତରକୁ ପଶିଗଲା । ତୃଣଭୋଜି ଡାଇନୋସରମାନେ ଧାଇଁଲେ ଆତ୍ମରକ୍ଷା ପାଇଁ ।



ଗଛରୁ ବହୁଥିବା ଅଠାଳିଆ କ୍ଷୀର ମଶାକୁ ଆବୋରି ଗଲା । ଅଠାଭିତରେ ଜୀବନ୍ତ ସମାଧି ନେଲା ସେଇ ମଶାଟି ।

ତାପରେ ସେଇଦିନଠୁ ଅନେକ ବର୍ଷ କଟିଗଲା । ପୃଥିବୀରେ ସେଇଠି ହୁଏତ ଏମିତି କିଛି ଅଘଟଣ ଘଟିଲା ଯେ ମାଟିତଳକୁ ଚାଲିଗଲା ଜଙ୍ଗଲ । ପୋତି ହୋଇ ପଡିଲା ସବୁ । ଯିଏ ଯେଉଁଠି ଯେମିତି ଥିଲା ସେମିତି ରହିଗଲା । ଗଛର ବଡ଼ବଡ଼ ଡାଳ ଓ ଗଣ୍ଡି କୋଇଲା ପାଲଟିଗଲା । ଜୀଅନ୍ତା ଡାଇନୋସରମାନଙ୍କର କଙ୍କାଳକୁ ଅକ୍ଷତ ରଖିଲା ସେ କାଳର ମାଟି ଓ ବାଲି । ବାଲି-ପଥର ହୋଇଗଲା । ବାଲି ପଥର ଭିତରେ ବ୍ରାକିଓସରସ, ପ୍ରୋଟୋସେରେଟପ୍ସ, 'ସିଲୋସିସ୍' ଏବଂ ଟି. ରେକ୍ସର ଜୀବାଶ୍ମ ରହିଗଲା ଅବିକଳ ପ୍ରତିମୂର୍ତ୍ତି ଭଳି । ମଶା ପେଟରେ ଡାଇନୋସରର ରକ୍ତ ଅକ୍ଷତ ରହିଗଲା ଗଛ ବକ୍କଳର ଅଠା ଭିତରେ ...।





'ଆର୍କିଓପ୍ଟେରିକ୍ସ'ର ଫସିଲ

# ଜୀବାଶ୍ମ (ଫସିଲ)
## କହେ କାହାଣୀ

ଜୀବନ ଥିଲେ ଜୀବ । ସେ ଖେଳେ... ବୁଲେ.... ପାକୁଳି କରେ... ଦେଖେ ଆଉ ଜାଣେ । ଅନ୍ୟଥା ଆଉ ସବୁ ଜଡ଼ ଓ ନିର୍ଜୀବ । ମରଣ ଆସିଲେ ଖେଳାବୁଲା କରୁଥିବା ଜୀବଟି ମିଶିଯାଏ ମାଟି-ପାଣି-ପବନରେ । ସେ ହଜିଯାଏ.... ଯଦି ବା ରହେ.... ରହେ ସ୍ମୃତିରେ । ମଣିଷର ସିନା ସ୍ମୃତି ଅଛି । ପଶୁପକ୍ଷୀର ସ୍ମୃତି ଜାଣି ହୁଏ ତା' ଖୋଜିବା ଢଙ୍ଗରୁ । ସେ ସ୍ମୃତି ଅଳ୍ପ ଦିନର ।



'ଆର୍କିଓପ୍ଟେରିକ୍ସ' ର ରେଖାଚିତ୍ର



ଶିଳ୍ପୀ ଦୃଷ୍ଟିରେ ଜୀବନ୍ତ ହୋଇଉଠିଥିବା 'ଆର୍କିଓପ୍ଟେରିକ୍ସ'

ଜୀବର ଦେହଟି ଅକସ୍ମାତ୍ ବାଲିରେ କି ଖଡ଼ିଚୂନର ଧୂଳିରେ ପୋତି ହୋଇ ପଡ଼ିଲେ ସେ ମାଟିତଳେ ଅବିକଳ ରହିଯାଏ ଅୟୁତ ବର୍ଷ । ବାଲି, ଖଡି ଓ ଚୂନ କାଳକ୍ରମେ ପଥର ପାଲଟି ଯାଏ । ପାଣି ଓ ପବନ ଛୁଇଁ ପାରେ ନାହିଁ ମେଦ ମାଂସର ଦିହକୁ । ଯଦିବା ଛୁଏଁ ସେଇ ବାଲି ପଥର ଭିତରେ ଛାଞ୍ଚଟିଏ ହୋଇ ରହିଯାଏ ।

ପ୍ରକୃତି ଯେତିକି ଚିହ୍ନା.... ସେତିକି ବି ଅଚିହ୍ନା । ଅନେକ କଥା, ଅନେକ କୌଶଳ, ଶିଖେଇଛି ସେଇ ପ୍ରକୃତି । ମାଟିତଳେ ନିୟୁତ, କୋଟି ବର୍ଷ ତଳର ଜୀବଜନ୍ତୁଙ୍କର ଅବିକଳ ପ୍ରତିକଳ୍ପ ଅକ୍ଷତ ରହିଛି । ହାଡ, ଦାନ୍ତ, ମାଢ଼ି, ଚମଡ଼ାର ଚିହ୍ନ ଓ ପାଦଚିହ୍ନ ଏମିତି ରହିଛି ଯେ ତାକୁ ଦେଖିଲେ ମନେ ହେବ... କାଲି ହୁଏତ କିଏ ଏଠି ଥିଲା ଚାଲୁଥିଲା ଜୀଇ ରହିଥିଲା । ଆଜି ଆଉ ନାହିଁ ।



ମାଟି ପଥର ଭିତରେ ଜୀବନର ଏଇ ଅବିକଳ ରୂପକୁ କହନ୍ତି 'ଜୀବାଶ୍ମ' ବା 'ଫସିଲ' । ପଥର ସ୍ତରରେ ମିଳୁଥିବା ଫସିଲ, ଅତୀତ ଜୀବନ ଓ ସମୟର ଅନେକ କାହାଣୀ କହେ । ବୈଜ୍ଞାନିକ 'ଫସିଲ'କୁ ଚିହ୍ନଟ କରି ତାହା କେତେ ପୁରୁଣା, ସେ ଜୀବର ଅବିକଳ ରୂପ ଓ ଆକୃତି କେମିତି, ତା'ର କଳ୍ପନା କରି ପାରନ୍ତି । ଗ୍ରୀକ୍ ଦେଶରେ ଆରିଷ୍ଟୋଟଲ, ଜେନୋଫେନ ଏବଂ ଷ୍ଟ୍ରାବୋ ଫସିଲ ସମ୍ପର୍କରେ ପ୍ରଥମେ କିଛି ଲେଖିଥିଲେ । ଆଲେକ୍‌ଜାଣ୍ଡ୍ରିଆରେ ଇରାଟୋସ୍ଥିନିସ ଏବଂ ଅନ୍ୟମାନେ ଫସିଲ ଉପରେ ଯାହାସବୁ ଆଲୋଚନା କରିଥିଲେ ତା'ର ଏକ ବିଶଦ ବିବରଣୀ ଖ୍ରୀଷ୍ଟପୂର୍ବ ୧୦ରୁ ୨୦ ସମୟରେ ରଚିତ ଷ୍ଟ୍ରାବୋଙ୍କ ଭୂଗୋଳରୁ ମିଳିଥାଏ ।

ଖ୍ରୀଷ୍ଟାବ୍ଦ ୧୪୫୨ରୁ ୧୫୧୯ରେ ଲିଓନାର୍ଡୋ ଡା-ଭିନ୍‌ସି ସମୁଦ୍ର ଶାମୁକା ଏବଂ ମତ୍ସ୍ୟଦାନ୍ତର ଫସିଲ ଦେଖିଥିଲେ ଓ ଦୁନିଆକୁ ଏହାର ପ୍ରକୃତ ଚିତ୍ର ଦେଇ ପାରିଥିଲେ । ଷୋଳଶ ଓ ସତରଶ ଶତକରେ କେତେକ ଚିନ୍ତାବିତ୍ ଫସିଲ ଉପରେ ଅନେକ କଳ୍ପନାଜଳ୍ପନା କରିଥିଲେ । ମାତ୍ର ଗତ ଶତାବ୍ଦୀଠାରୁ ହିଁ ଏହି ଫସିଲରୁ ଅତୀତର କାହାଣୀ ସଠିକ୍ ଭାବେ କୁହାଯାଇପାରୁଛି ।





ଆମ ଭାରତବର୍ଷରେ ନର୍ମଦା ଉପତ୍ୟକା, ପଶ୍ଚିମବଙ୍ଗର ବାଙ୍କୁରା ଜିଲ୍ଲାର ସୁସୁନିଆ, ଆନ୍ଧ୍ରପ୍ରଦେଶର ଆଦିଲାବାଦ ଜିଲ୍ଲାରେ ଫସିଲମାନ ବହୁଳ ପରିମାଣରେ ମିଳୁଛି । ପାକିସ୍ତାନକୁ ଲାଗି ଗୁଜୁରାଟର ରୁଜ-ମଣ୍ଡାଓ୍ୱି ରାସ୍ତାର 'ଧୋଷାଓଲଟ'ଠାରେ ଏକ ଶୁଖିଲା ପୋଖରୀର ମାଟିତଳୁ ୨୧୩ରୁ ୨୪୪ ନିୟୁତବର୍ଷ ତଳର କୁମ୍ଭୀର ଖପୁରୀ ମିଳିଛି । ବୈଜ୍ଞାନିକମାନେ କହନ୍ତି ଯେ ଜୁରାସିକ ଯୁଗରେ ଏଠାରେ ଥିଲା ସମୁଦ୍ରଟିଏ । ଯାହାକୁ କୁହାଯାଉଥିଲା 'ଟେଥସସାଗର' । ପ୍ରଫେସର ଭି.ଜି. ଫାନସାଲକର କହନ୍ତି ଯେ ଏହି ସାଗରରେ ଚଳପ୍ରଚଳ କରୁଥିବା କାଲୋଭିଆନ ଅକ୍‌ସଫୋଡିଆନ କୁମ୍ଭୀରମାନେ ବାସ କରୁଥିଲେ । ହୁଏତ ଏହି ଫସିଲର ଆବିଷ୍କାର ଭାରତବର୍ଷରେ ଜୁରାସିକ ଯୁଗର ଡାଇନୋସରମାନଙ୍କ କଥା କିଛି କହିପାରେ ବା ସନ୍ଧାନ ଦେଇପାରେ !



# ଡି.ଏନ୍.ଏ.ରୁ ଡାଇନୋସର ବଞ୍ଚି ଉଠିବ !

ସେଇ ଜାଗାଟିର ନାଆଁ 'ମଣ୍ଟାନା' । ଡାଇନୋସରମାନଙ୍କର ମଡ଼ାଭୂଇଁ । ତାକୁ କେହି କେହି କହୁଛନ୍ତି ନର୍କର ଖାଡ଼ି (Hell's creek) । ଗଛରୁ ବାହାରୁଥିବା ବହଳିଆ ଅଠା... କାଚକେନ୍ଦୁ ଭଳି ସ୍ୱଚ୍ଛ । ତାକୁ କହନ୍ତି 'ଅମ୍ୱର' । ସେ ଅମ୍ବର ଭିତରେ ଜୀଅନ୍ତା ପୋତି ହୋଇ ପଡ଼ିଥିଲା ଡାଇସେରଠୁ ରକ୍ତ ପିଇଥିବା ମଶା । ବିଜ୍ଞାନୀମାନେ ଆଜି ସେ ରକ୍ତକୁ ଚିହ୍ନିଲେଣି । ତା' ଭିତରୁ ଅତି ଯତ୍ନରେ DNA (Deoxy-ribo Nuclic Acid) ସଂଗ୍ରହ କରୁଛନ୍ତି । ମିଃ ଜ୍ୟାକ ହର୍ଣ୍ଣର ଏଭଳି DNA ପାଇଛନ୍ତି ବୋଲି ଦାବି କରନ୍ତି । ୧୯୯୪ ନଭେମ୍ବର ମାସରେ ମିଃ ଉଡଓ୍ୱାର୍ଡ ମଧ ଡାଇନୋସରର DNA ପାଇଛନ୍ତି ବୋଲି କହୁଛନ୍ତି । 'ଉତ୍ତା' ଅଞ୍ଚଳରେ ଚଳପ୍ରଚଳ କରୁଥିବା ଡାଇନୋସରର ଅକ୍ଷତ ଜୀବସତ୍ତାରୁ DNA ମିଳିଛି । ଗୋଟିଏ କୋଇଲା ଖଣିର ୧୮୦୦ ଫୁଟତଳେ ରହିଥିବା ଗୋଟିଏ ଜୀବାଶ୍ମରୁ ମିଳିଥିବା DNA ସମ୍ପର୍କରେ ବ୍ରିଗହାମ୍ ୟଙ୍ଗ ୟୁନିଭରସିଟିରେ ଉଡ୍‌ୱାଡଙ୍କ ନେତୃତ୍ୱରେ ଅନୁଶୀଳନ ଚାଲିଥିଲା । ଏହି DNA ଏବର ମଣିଷ, ପଶୁପକ୍ଷୀ ଓ ସରୀସୃପର ଯେତେବେଳେ ନୁହଁ, ଏହା ତେବେ ଡାଇନୋସରର ବୋଲି ଉଡ୍‌ୱାଡ ଘୋଷଣା କରିଛନ୍ତି ।

DNA ସମ୍ପର୍କରେ ୧୯୮୦ରୁ ଗବେଷଣା ଆରମ୍ଭ ହୋଇଛି । ଉଇଲସନ ଓ ତାଙ୍କ ସହଯୋଗୀ ୧୯୮୪ରେ ମ୍ୟୁଜିୟମରେ ସୁରକ୍ଷିତ ଥିବା ଜୀବାଶ୍ମରୁ ଆଜକୁ ୧୧୨ ବର୍ଷ ତଳେ ଲୋପ ପାଇ ଯାଇଥିବା 'କ୍ୱାଗା'ର DNA ସଂଗ୍ରହ କରି ପାରିଛନ୍ତି । ଏହାପରେ ୧୩୦୦୦ ବର୍ଷ ତଳର ଅବଲୁପ୍ତ ଏକ ବୃକ୍ଷଚର ଚତୁଃଷ୍ପଦର DNA ମିଳିଥିଲା । ୪୦୦୦ ବର୍ଷ ତଳେ ସାଇବେରିଆର ବରଫ ସ୍ତର ଭିତରେ



ଡି.ଏନ୍.ଏ ଅଣୁର କଳ୍ପିତ ଚିତ୍ର

ଅକ୍ଷତ ଥିବା ଏକ ଅତିପ୍ରାଚୀନ ହସ୍ତୀ (Mamoth)ର DNA ମଧ ସଂଗୃହୀତ ହେଲା । ଠିକ୍ ପାଞ୍ଚ ବର୍ଷପରେ ଇଦାହୋ ସେଲ୍‌ରୁ ଏଡଓ୍ୱାର୍ଡ଼ ଗୋଲେନବର୍ଗ ୧୭ ନିୟୁତ ବର୍ଷତଳର ଅତି ପ୍ରାଚୀନ ମଙ୍ଗୋଲିଆର ଏକ ବୃକ୍ଷପତ୍ରର DNA ପାଇଲେ । ଅଳ୍ପଦିନତଳେ ୧୨୦ ନିୟୁତ ବର୍ଷତଳେ ବଞ୍ଚିଥିବା ଏକ ଶସ୍ୟବିନାଶକାରୀ ପତଙ୍ଗର DNA ମିଳିପାରିଛି । ମଣିଷ ମନରେ ସ୍ୱପ୍ନ ଅନେକ । ସ୍ୱପ୍ନ କ'ଣ ସତ ହୁଏ ? ଏକଥାର ଖିଅ ଜାଣିବାକୁ ଆଜି ବି ମଣିଷ ପ୍ରଶ୍ନ କରୁଛି । ଖୋଜୁ ଖୋଜୁ ଅତି ପ୍ରାଚୀନ କାଳର DNA ଯଦି ମିଳିପାରୁଛି... ସ୍ୱପ୍ନକୁ ସତ କରି ହେବ ନାହିଁ କାହିଁକି ?







# ଜୁରାସିକ୍ ପାର୍କ

ମାଇକେଲ କ୍ରିକ୍‌ଟନ ''ଜୁରାସିକ ପାର୍କ'ର ଲେଖକ । ସ୍ୱପ୍ନର ପାର୍କ 'ଜୁରାସିକ ପାର୍କ' । ସେଇଠି ରହିବ ଜୁରାସିକ ଯୁଗର ଡାଇନୋସର । ନିୟୁତ ବର୍ଷ ତଳର ସମୟକୁ କୁହାଯାଏ ଜୁରାସିକ ଯୁଗ । ସେ ଯୁଗ ବାଲି ପଥରର । ଘଞ୍ଚ ଜଙ୍ଗଲ, ଜଳଭୂମି ଓ ଓଦାଳିଆ ସମୟର ।

ଜନ୍ ହାମଣ୍ଡ କୋଟିପତି... ଅଚଳାଚଳ ସମ୍ପତ୍ତିର ମାଲିକ । ତାଙ୍କ ମନ ଭିତରେ ବସାବାନ୍ଧେ ଅନେକ ଅପହଞ୍ଚ ଖିଆଲ । ସ୍ୱପ୍ନର ଝଲସାରେ ସଦାସର୍ବଦା ସେ ବିଭୋର । କୋଷ୍ଟାରିକାର ଏକ ଘରୋଇ ଦ୍ୱୀପକୁ ସେ ବାଛିନେଲେ ତାଙ୍କର କଳ୍ପିତ ଜୁରାସିକ ପାର୍କ ପାଇଁ । ତାଙ୍କୁ ସହଯୋଗ କଲେ ପ୍ରତ୍ନତତ୍ତ୍ୱବିତ୍ ଆଲାନ୍ ଗ୍ରାଣ୍ଟ ଓ ପ୍ରାଚୀନ ଉଦ୍ଭିଦବିଜ୍ଞାନୀ ଏଲି ସାଟ୍‌ଲର । ଅର୍ଥର ଅଭାବ ନାହିଁ... ସ୍ୱପ୍ନକୁ ସତ କରିଦେବାକୁ ଲାଗିପଡ଼ିଲେ ବୈଜ୍ଞାନିକ ଗ୍ରାଣ୍ଟ । ମୋସୋଜୋଇକ ଯୁଗର ଅମ୍ବର ଭିତରେ ଅକ୍ଷତ ରହିଥିବା ରକ୍ତଖିଆ ମଶା ଦେହରୁ ଡାଇନୋସରର DNA ସଂଗ୍ରହ କଲେ । ଗବେଷଣାଗାରରେ ଅଳ୍ପମାତ୍ର ମିଳିଥିବା DNA କୁ ସେ ପର୍ଯ୍ୟାପ୍ତ କରିପାରିଲେ । ସେଇ DNA କୁ ଛନ୍ଦି ଚାଲିଲେ ଜଣେ ବୁଣାକାର ଭଳି । ଯେଉଁଠି ଶୂନ୍ୟତା ରହିଲା, ସେ ସ୍ଥାନକୁ ଖାପ୍ ଖାଉଥିବା କୌଣସି ବେଙ୍ଗର DNA ରେ ଭରଣା କଲେ । ପୁନର୍ଗଠିତ 'ଜୋନୋମ୍'ଗୁଡ଼ିକୁ ସଯତ୍ନରେ କୁମ୍ଭୀରର ଡିମ୍ବାଣୁରେ ଅବସ୍ଥାପିତ କରି ଏକ ସ୍ୱତନ୍ତ୍ର ପ୍ଲାଷ୍ଟିକ ଅଣ୍ଡାଖୋଳରେ ରଖାଗଲା । ନିୟନ୍ତ୍ରିତ ଉତ୍ତାପ ଓ ପରିବେଶ ଭିତରେ ସେଇ କୃତ୍ରିମ ଅଣ୍ଡା ଭିତରୁ ଫୁଟି ବାହାରିଲା ଡାଇନୋସର... ଜୁରାସିକ ଯୁଗରେ ଚଳପ୍ରଚଳ କରୁଥିବା ଡାଇନୋସର ।





# ଡାଇନୋସର ଦୁନିଆର କାହାଣୀକାର

## ମାଇକେଲ କ୍ରିକ୍‌ଟନ



ଜୁରାସିକ୍‌ପାର୍କରେ ବଢ଼ିଲେ ଗବେଷଣାଗାରରୁ ଉତ୍ପନ୍ନ ହୋଇଥିବା ଜୀବନ୍ତ ଡାଇନୋସର । ବୁଲି ଯାଇଥିଲେ ଗ୍ରାଣ୍ଟ ଓ ସାଟ୍‌ଲର । ସଙ୍ଗରେ ଥିଲେ ହାମଣ୍ଡ ଓ ତାଙ୍କର ଦୁଇପୁତ୍ର । କେତେକ ବୈଷୟିକ ତ୍ରୁଟି ଯୋଗୁ ଜନ୍ତାଭିତରୁ ଖସିଗଲେ ଡାଇନୋସର । କେନ୍ଦ୍ର ଆମେରିକାର ମୁଖ୍ୟ ସ୍ଥଳଭାଗ ହେଲା ସେମାନଙ୍କ ଚରାଭୂଇଁ । ଟ୍ରାଇସେରେଟପସ ବ୍ରାକିଓସରସ ଏବଂ ଭେଲୋସିରାପ୍‌ଟରମାନେ ମୁକୁଳି ଯିବାରୁ ଚାରିଆଡ଼େ ଭୟ ଖେଳିଗଲା । ସେଇ ଭୟଙ୍କର ଜନ୍ତୁମାନଙ୍କୁ କେମିତି ସାମ୍ନା କରିବ ମଣିଷ ? କେମିତି ବଞ୍ଚେଇ ପାରିବ ନିଜକୁ ସେମାନଙ୍କ କବଳରୁ ? ବନ୍ଧୁକର ଗୁଳି ଯଦି 'ଇମୁ'ମାନଙ୍କୁ ନିୟନ୍ତ୍ରଣ କରି ପାରି ନ ଥିଲା । ଡାଇନୋସରମାନେ କବଳିତ ହୁଏନ୍ତେ ବା କିପରି ?

ସ୍ୱପ୍ନରେ ଧାଇଁ ଆସୁଥିବା ଖୁବ୍ ଗୋଟାଏ ବଡ଼ ଷଣ୍ଢ - ରାଇନୋ ଅଥବା ହାତୀଟାଏ । ବିଲେଇ ଗୋଟାଏ ନିଶ ଫୁଲେଇ ଡେଇଁ ପଡୁଥିବ... ନିଦ ଭାଙ୍ଗି ଯିବ । ଭୟରେ ଦିହ ଥରେ... ବିନ୍ଦୁ ବିନ୍ଦୁ ଝାଳ ବହିଯାଏ । 'ଦୁଃସ୍ୱପ୍ନ' ବୋଲି କହି ପକାଏ ମଣିଷ ।

ଜୁରାସିକ ପାର୍କ ଗୋଟାଏ ସ୍ୱପ୍ନ ଓ ଦୁଃସ୍ୱପ୍ନର କାହାଣୀ । ସତରେ କ'ଣ ଜୀଇ ଉଠି ପାରିବ ଡାଇନୋସର ? କଙ୍କାଳ କ'ଣ ଜାଗି ଉଠିବ ? ମଡ଼ା ମୁହଁରେ କ'ଣ ସ୍ୱର ଶୁଭିବ ? ଅସରନ୍ତି ଏମିତି ପ୍ରଶ୍ନ ?



ଆଈ ଗପ କହେ; ନାତିନାତୁଣୀ ଶୁଣନ୍ତି । କ୍ରିକ୍‌ଟନଙ୍କ ଗପ ସାରା ଦୁନିଆ ଶୁଣେ । 'ଜୁରାସିକ ପାର୍କ' ଗପ ବହିଟିଏ । ସେ ଗପ ବିଜ୍ଞାନର ଗପ । ତାକୁ ଲେଖିଛନ୍ତି ମାଇକେଲ କ୍ରିକ୍‌ଟନ । ଏବେ ତାଙ୍କ ବୟସ ୫୫ ବର୍ଷ । ଛଅଫୁଟ ନଅଇଞ୍ଚର ଡେଙ୍ଗା ମଣିଷଟିଏ । ସେ କିଲିମାଞ୍ଜାରୋ ପର୍ବତ ଚଢ଼ିଛନ୍ତି । ମଣିଷଖିଆ ସାର୍କ ମାଛରେ ଭରପୁର ଦକ୍ଷିଣ ପ୍ରଶାନ୍ତ ମହାସାଗର । ସେଇ ସମୁଦ୍ରରେ ସେ ପହଁରିଛନ୍ତି । ସମୁଦ୍ର ତାଙ୍କୁ ଭଲ ଲାଗେ । ତେଣୁ ସମୁଦ୍ରକୂଳରେ ଥିବା କାଲିଫର୍ଣ୍ଣିଆର ଶାନ୍ତାମନିକା ନିବାସରେ ସେ ଚୁପଚାପ ରହୁଛନ୍ତି । ''ପ୍ରତ୍ୟେକ ମଣିଷ ପାଇଁ ନିରୋଳା ସମୟ ଦରକାର । ବ୍ୟକ୍ତିଗତ ଜୀବନ ପାଇଁ କିଛି ସମୟ ରହିବା ଉଚିତ ।'' ତେଣୁ ସେ ଏକାନ୍ତରେ ସମୟ ବିତାଇ ଦିଅନ୍ତି ।

ମାଇକେଲ କ୍ରିକଟନ ୧୯୯୦ରେ 'ଜୁରାସିକ ପାର୍କ' ଲେଖିଥିଲେ । ନିଶ୍ଚିହ୍ନ ହୋଇଯାଇଥିବା ଡାଇନୋସରର ଅବଶେଷରୁ ଅକ୍ଷତ ଜୀବକୋଷ ମିଳିଗଲେ, ତହିଁରୁ DNA ସଂଗ୍ରହ କରିହୁଏ । ସଂଗୃହୀତ DNA କୁ କ୍ଲୋନିଂ କରି ଲୁପ୍ତ ଜୀବନକୁ ଉଦ୍ଧାର କରିବାର ସ୍ୱପ୍ନଟିଏ ଥିଲା 'ଜୁରାସିକ ପାର୍କ'ରେ । ସେ ବହି ପ୍ରକାଶ ପାଇବାର ଦୁଇବର୍ଷ ପରେ ଜୀବବିଜ୍ଞାନୀମାନେ କ୍ଲୋନିଂ କରିବାରେ ସଫଳ ହୋଇଛନ୍ତି ବୋଲି ଦାବି କରିଛନ୍ତି । ବିଜ୍ଞାନଜଗତରେ କ୍ଲୋନିଂ ଆଉ ସ୍ୱପ୍ନ ନୁହେଁ; ସତକଥା ।

'ଜୁରାସିକ ପାର୍କ' ସିନେମାକୁ ପ୍ରସ୍ତୁତ କରିଛନ୍ତି ସ୍ପିଲବର୍ଗ । 'ଟିରାନୋସରସ ରେକ୍ସ' ଭଳି 'ରାପ୍‌ଟର' ଚଞ୍ଚଳ ସ୍ୱଭାବର ହିଂସ୍ର



ଡାଇନୋସରଟିଏ । ରାପ୍‌ଟର ଆକୃତିରେ ଛୋଟ । ସିନେମାରେ ଚମତ୍କାରିତା ଆଣିବା ପାଇଁ ସ୍ପିଲବର୍ଗ ରାପ୍‌ଟରକୁ ଦୁଇଗୁଣ ବଡ଼କରି ଚିତ୍ରଣ କଲେ । ଆଶ୍ଚର୍ଯ୍ୟର କଥା ସିନେମା ପ୍ରଦର୍ଶିତ ହେବା ପୂର୍ବରୁ 'ଉଟ୍‌ଟା' ଅଞ୍ଚଳରେ ସିନେମାବର୍ଣ୍ଣିତ ବୃହତ୍ତର ଗୋଟିଏ ରାପ୍‌ଟରର ଜୀବାଶ୍ମ ମିଳିଲା । ଏହାକୁ 'ଉଟ୍‌ଟା ରାପ୍‌ଟର' କୁହାଯାଉଛି ।

ଏସବୁ ଅଦ୍ଭୁତ ଘଟଣା ଯୋଗୁଁ 'ଜୁରାସିକ ପାର୍କ' ବହି ଖଣ୍ଡକ ଖୁବ୍ ଲୋକପ୍ରିୟ ହୋଇଯାଇଛି । ମୋଟ ୧୨ ନିୟୁତ ବହି ବିକ୍ରି ସରିଛି । କ୍ରିକ୍‌ଟନ ଡାଇନୋସର କଥାକୁ ଲୋକପ୍ରିୟ କରିଥିବାରୁ ନିଉୟର୍କ ମ୍ୟୁଜିୟମ ଅଫ୍ ନାଚୁରାଲ ହିଷ୍ଟ୍ରି ତାଙ୍କୁ ଡାଇନୋସର-ମଣିଷ ବୋଲି ସମ୍ବୋଧନ କରିଛି ।

ମାଇକେଲ କ୍ରିକ୍‌ଟନ ବିଜ୍ଞାନ ଜଗତରେ ଜଣେ ସଫଳ କାହାଣୀକାର । ୧୯୬୯ରେ ଘାତକ ଜୀବାଣୁର କଥା (ଆଣ୍ଡ୍ରୋମେଡ଼ା ଷ୍ଟ୍ରେନ) ଏବଂ ୧୯୮୦ରେ ରଚିତ କଙ୍ଗୋ (କଥାକୁହା ଗରିଲା) ଉଭୟ ବହି ଓ ସିନେମା ପାଇଁ ସେ ବିଖ୍ୟାତ । ତାଙ୍କର ସମସ୍ତ ବହିର କାଟ୍‌ତି ଏତେ ଯେ ଆମେରିକା ଗୋଟିଏ ବହି କମ୍ପାନୀ (Ballantine) ୧୯୯୩ ବର୍ଷସାରା କେବଳ ଏଇ ଲେଖକଙ୍କର ସବୁ ବହି ଛାପିବାରେ ବ୍ୟସ୍ତ ରହିଥିଲା । ୨୪ଟି ଭାଷାରେ ଅନୂଦିତ ହୋଇ ତାଙ୍କର ବହିଗୁଡ଼ିକର ମୋଟ ଏକଶହ ନିୟୁତ କପି ବିକ୍ରି ସରିଲାଣି । ଜଣାପଡ଼ିଛି ଯେ କେବଳ ପୁସ୍ତକ ଲେଖାରୁ ପାଇଥିବା ବାଇଶ ନିୟୁତ ଡଲାର ଏବେ ବ୍ୟାଙ୍କରେ ଗଚ୍ଛିତ ଅଛି ।

'ଜୁରାସିକ ପାର୍କ'ର ଦ୍ୱିତୀୟଭାଗ ସିନେମା ପ୍ରସ୍ତୁତି ପଥରେ । ମାଇକେଲ କ୍ରିକ୍‌ଟନଙ୍କ ଅନ୍ୟ ଏକ ବହି 'ନିଶ୍ଚିହ୍ନ ପୃଥିବୀ' (The lost world) । ପୂର୍ବରୁ ଏହି ନାମରେ ଲିଖିତ ଏକ ଉପନ୍ୟାସ ୧୯୨୫ରେ ସିନେମାରେ ପରିଣତ ହୋଇଥିଲା । ମାତ୍ର କ୍ରିକଟନଙ୍କ ବହିର ନାଆଁ ଏକା ହେଲେ ବି ବିଷୟବସ୍ତୁ ଭିନ୍ନ ଭିନ୍ନ ।



## କମ୍ପ୍ୟୁଟରରେ
# ଅବିକଳ ଡାଇନୋସର କରାଗଲା କେମିତି ?

'ଜୁରାସିକ ପାର୍କ' ସିନେମାରେ ଡାଇନୋସର ଅବିକଳ ଜୀଅନ୍ତା ଜୀବଟି ଭଳି ଧାଇଁଛି ଓ ମୁହଁ ବୁଲେଇ ଚାହିଁଛି । ସେ ଏତେ ବାସ୍ତବ ମନେ ହେଉଛି ଯେ ଆଜି ଯେ କେହି ବିଶ୍ୱାସ କଲାଣି ଯେ ଡାଇନୋସରମାନେ ଏ ପୃଥିବୀରେ ଚଳପ୍ରଚଳ ହେଉଥିଲେ ।

ବାସ୍ତବ ରୂପକଳ୍ପ ସମ୍ଭବ ହୋଇଛି କମ୍ପ୍ୟୁଟର ମାଧ୍ୟମରେ । ଏଭଳି ଜୀବନ୍ତ ଡାଇନୋସରକୁ ପ୍ରସ୍ତୁତ କରିବାପାଇଁ ୫୦ ଜଣ ଶିଳ୍ପୀ, ଅଠର ମାସ ସମୟ ଦେଇଛନ୍ତି ଓ ୧୫ ନିୟୁତ ଡଲାର ମୂଲ୍ୟର 'ସଫ୍‌ଟୱାର' ଆବଶ୍ୟକ ହୋଇଛି ।

କମ୍ପ୍ୟୁଟର ପରଦା ଉପରେ ଗୋଟିଏ 'ଟିରାନୋସରସ ରେକ୍ସ'ର ହାଡ଼ଖଣ୍ଡକୁ ନିଖୁଣଭାବେ ଆଙ୍କି ଦେଲେ ଷ୍ଟିଭ ଉଇଲିୟମସ । ସବୁତକ ହାଡ଼ର ନକ୍ସା ପ୍ରସ୍ତୁତ ପରେ ଏକ ସୁପର କମ୍ପ୍ୟୁଟର ମାଧ୍ୟମରେ ହାଡ଼ଗୁଡ଼ିକୁ ଯୋଡ଼ି କଙ୍କାଳ ପ୍ରସ୍ତୁତ କରିଦେଲେ ।





ତା'ପରେ ଷ୍ଟିଫେନ ଫାଙ୍ଗ୍‌ମିଅର କଙ୍କାଳ ଉପରେ ମାଂସପେଶୀ, ଚର୍ମ ଓ ସାବଲୀଳତା ଆଣିଦେଲେ । କମ୍ପ୍ୟୁଟର ଶିଳ୍ପୀମାନେ ବିଶେଷଜ୍ଞମାନଙ୍କ ସହ ବ୍ୟାପକ ଆଲୋଚନା କରି ସ୍ଥିର କଲେ 'ରେକ୍ସ'ର ଗତି ଓ ପ୍ରକୃତି କିଭଳି ଥିଲା । ସେ କିଭଳି ଶବ୍ଦ କରୁଥିବ, ସେ କଥା ଜାଣିବାପାଇଁ ସେମାନେ ବିଶେଷ ଜ୍ଞାନ ଅର୍ଜନ ନିମନ୍ତେ ଉପଯୁକ୍ତ ଅନୁଷ୍ଠାନରେ ତାଲିମପ୍ରାପ୍ତ ହେଲେ । ତା'ପରେ 'ରେକ୍ସ' ପ୍ରତିମାକୁ ସେମାନେ ଜୀବନ୍ତ କଲେ ଓ ଚଳଚଞ୍ଚଳ କରାଇପାରିଲେ ।



ସ୍ଥଳ ବିଶେଷରେ ମାଟି ବା ପ୍ଲାଷ୍ଟର ଅଫ୍ ପାରିସରେ ପ୍ରତିମା ଗଢ଼ି କ୍ୟାମେରା ମାଧ୍ୟମରେ ଛବିସବୁ କମ୍ପ୍ୟୁଟର ଭିତରକୁ ନିଆଗଲା ଓ ଆବଶ୍ୟକତା ଅନୁଯାୟୀ ସଂଶୋଧନ କରାଯାଇପାରିଲା । ILmର ଶିଳ୍ପୀମାନେ ୧୦ ଫୁଟ ଉଚ୍ଚର 'ଗାଲିମାଇମସ'ର ଏକ ପ୍ରତିମା ଗଢ଼ି ଦେଇଥିଲେ । ତାକୁ କମ୍ପ୍ୟୁଟର ଭିତରକୁ ନିଆଯାଇ ଦଶଗୁଣ ବଡ଼ କରି ଦେଖାଗଲା । ଅବିକଳ ଡାଇନୋସରର ରୂପକଳ୍ପ ପାଇଁ କମ୍ପ୍ୟୁଟର ବିଶେଷଜ୍ଞମାନଙ୍କ ଧୈର୍ଯ୍ୟ, କର୍ମ ତତ୍ପରତା ଓ ଆଗ୍ରହ ସବୁଠୁ ଗୁରୁତ୍ୱପୂର୍ଣ୍ଣ । ନିଶ୍ଚିହ୍ନ ପୃଥିବୀର ଜୀବଜଗତକୁ କମ୍ପ୍ୟୁଟର ମାଧ୍ୟମରେ ଯେଭଳି ଚଳଚଞ୍ଚଳ କରାଯାଇପାରିଛି, ତାହା କେବଳ ନିଷ୍ଠା ଓ ସାଧନା ଯୋଗୁଁ ସମ୍ଭବ ହୋଇ ପାରିଛି ।



# ଜୁରାସିକ ପାର୍କ କ'ଣ ସମ୍ଭବ ?



ପ୍ରଶ୍ନର ଉତ୍ତର ଅଛି । ବୈଜ୍ଞାନିକମାନେ ଆଶାବାଦୀ । ଜହ୍ନରେ ମଣିଷ ଯଦି ଓହ୍ଲେଇପଡ଼ି ଚାଲି ପାରିଲା... ମହାକାଶରେ ମାସ ମାସ ଧରି ଉଡ଼ନ୍ତା ଯାନରେ ବସି ଗବେଷଣା କରିପାରିଲା... ଅତୀତରେ ଥିବା ଜୀବନକୁ ସେ ଜୀଆଇ ପାରିବ ନାହିଁ କାହିଁକି ?

ରାଜମିସ୍ତ୍ରୀ ଘର ତିଆରି କରେ । ଇଟା ଉପରେ ଇଟା ଥୋଇ ଚୂନ, ସିମେଣ୍ଟରେ ଯୋଡ଼ି କାନ୍ଥ ହୁଏ । କାନ୍ଥ ଉପରେ ଛାତ, ତା'ପରେ ଘର । ମେଞ୍ଚା ମେଞ୍ଚା କାଦୁଅ ଲଦି ବି ମାଟି ଘର ହୁଏ, ମିସ୍ତ୍ରୀକୁ ଜଣା ଘର ତିଆରିର କୌଶଳ ।





ଜୀବକୋଷର ଥାକ ଥାକ ଗୋଟାଏ ଘର ଏଇ ଜୀବନ । ଜୀବକୋଷ ଭିତରେ ଆମିନୋ ଏସିଡ ଅଛି । DNA ମିଳିଗଲେ ଜୀବଟିଏ ଗଢ଼ିହେବ । DNA ସଂଗ୍ରହ ଏକ କଷ୍ଟସାଧ ଗବେଷଣା । ମେସୋଜୋଇକ ଯୁଗର ଗଛର ଅଠା ଭିତରେ ବନ୍ଦୀଥିବା ମଶା ଓ ପତଙ୍ଗ ପେଟରେ ଥାଏ ଡାଇନୋସରର ରକ୍ତ । ସେଇ ରକ୍ତରୁ DNA ସଂଗୃହୀତ ହୁଏ । ପ୍ରଥମେ ଶୁଖି ଯାଇଥିବା ଅଠାଖଣ୍ଡକୁ (ଯାହାକୁ କହନ୍ତି ଅମ୍ବର) ବିଶୋଧନ କରାଯାଏ । ତା'ପରେ ଅଠାଖଣ୍ଡକୁ ଭାଙ୍ଗି ମଶା ଓ ପତଙ୍ଗ ଦେହରୁ ଏକ ଦ୍ରାବକ ମାଧମରେ ଜୀବନ୍ତ 'ଟିସୁ'ଗୁଡ଼ିକୁ ତରଳାକ୍ତ କରି ତାକୁ ଦୁଇ ଚାରିଥର ଉଷୁମ କରାହୁଏ । କିଛି ସମୟ ଚହଲାଯାଏ । ସଂଗୃହୀତ ନମୁନାକୁ ଶୁଖେଇ ୯୫ ଡିଗ୍ରୀ ସେଣ୍ଟିଗ୍ରେଡ ଉତ୍ତାପରେ ପ୍ରାୟ ପାଞ୍ଚ ମିନିଟ୍ ରଖିଲାପରେ ପରୀକ୍ଷାଗାରରେ ଥିବା ଯନ୍ତ୍ରପାତିର ସହାୟତାରେ DNA କୁ ବାହାର କରି ୯୦ ଡିଗ୍ରୀ ସେଣ୍ଟିଗ୍ରେଡରେ ଏକ ବିଶୋଧିତ ପାତ୍ରରେ ସାଇତି ରଖାଯାଏ । DNAକୁ ଯତ୍ନର ସହ ସାଇତିବା ସବୁଠୁ ଗୁରୁତ୍ୱପୂର୍ଣ୍ଣ । ପ୍ରଦୂଷଣ ହେଲେ ସମସ୍ତ ଚେଷ୍ଟା ବିଫଳ ହେବାର ସମ୍ଭାବନା ଅନେକ ବେଶି ।




ପଲିମର୍‌ସେ ଚେନ ରିଆକ୍‌ସନ (PCR) ପ୍ରକ୍ରିୟାରେ DNA କୁ ଗରମ କରାଯାଏ । ଫଳରେ DNA ''ପ୍ରାଇମର''ଏବଂ ନିଉକ୍ଲିଓଟାଇଡ' ଏଇ ଦୁଇଟି ଅଂଶରେ ବିଭାଜିତ ହୁଏ । ପ୍ରାଇମର DNAର କ୍ଷୁଦ୍ରାଂଶ । ନିର୍ଦ୍ଦିଷ୍ଟ ଉତ୍ତାପରେ DNA ର ବିଭାଜନ ହୋଇଥାଏ ଏବଂ ସାଧାରଣ ଉତ୍ତାପରେ ପ୍ରାଇମର ଓ ନିଉକ୍ଲିଓଟାଇଡ ପୁନଃ ଆକର୍ଷିତ ହୋଇ DNA ଗଠିତ ହୁଏ । ଏହି ଭଙ୍ଗାଗଢ଼ା ପ୍ରକ୍ରିୟାରେ ଅଳ୍ପମାତ୍ର DNA ପର୍ଯ୍ୟାପ୍ତ ହୋଇପାରେ । ଏହା ଖୁବ୍ ଅଳ୍ପ ସମୟ ମଧ୍ୟରେ ଘଟେ । ପର୍ଯ୍ୟାପ୍ତ DNA କୁ ନେଇ ବିଜ୍ଞାନୀ କଳ୍ପିତ ଜୀବନର ମୂଳଦୂଆ ପକାଏ... ଆମ ଆଗରେ କିଛି ନ ଥାଏ... ମାତ୍ର ଜୀବଟିଏ ଠିଆ ହୋଇପାରେ । ମଣିଷ ଡାଇନୋସରକୁ ଦେଖି ନାହିଁ, ମାତ୍ର ତା'ର DNA କୁ ନେଇ ଡାଇନୋସର ଗଢ଼ିଦେବ ବୋଲି ଦମ୍ଭ ବାନ୍ଧିଛି ।

ଚିହ୍ନଟ କରାଗଲା କେମିତି ? ଏହି ବୈଜ୍ଞାନିକମାନେ କହନ୍ତି ଯେ ବୈଜ୍ଞାନିକର ହାତର ଝାଳ ବି ପ୍ରଦୂଷଣର କାରଣ ହୋଇଯାଏ । ତେଣୁ DNA ରୁ କ୍ଲୋନିଂ କରିବା ଏକ ଅସମ୍ଭବ ପରିକଳ୍ପନା !!!

ମାତ୍ର ଡଃ ହରନର ତାଙ୍କ ତଥ୍ୟର ସତ୍ୟତା ଉପରେ ଅବିଚଳ । ତାଙ୍କ ଭଳି ଆଉ ଉଡ୍‌ୱାର୍ଡଙ୍କ ଯୁକ୍ତି ଖୁବ୍ ଦୃଢ଼ । ସେମାନେ ଡାଇନୋସରର DNA ପାଇଛନ୍ତି । ତାହା ସଂରକ୍ଷିତ ହୋଇ ରହିଛି । ହୁଏତ ସେଇ DNAରୁ ଡାଇନୋସର ଜୀବନ ପାଇ ଚାଲିବ । ମାଟି ଦୁଲୁକି ଉଠିବ । କୋଦା କୋଦା ଗୋଡ... ଲମ୍ବା ବେକ... କୁମ୍ଭୀରିଆ ଦାନ୍ତ.... କୁଣ୍ଢ ପାଉ ନଥିବା ଲାଞ୍ଜ ଦେଖି ଭୟରେ... ଚିତ୍କାର କରି ଦଉଡ଼ିବ ମଣିଷ ।




ଆଗରୁ ବିଶ୍ୱାସ ଥିଲା ପାଣି, ପବନ ଓ ଆଲୋକ ଜୈବିକ ସତ୍ତାକୁ (ଜୀବିତକୋଷ) ଲୋପ କରିଦିଏ । ତେଣୁ DNA ର ବିନାଶ ଘଟେ । ମାତ୍ର କୋଟି କୋଟି ବର୍ଷ ତଳର ଜୀବସତ୍ତା ଜୀବାଶ୍ମ ଭିତରେ ଅକ୍ଷତ ରହିଛି, ଏହାହିଁ ବିସ୍ମୟ । କେତେକ ବିଜ୍ଞାନୀ କହୁଛନ୍ତି ଯେ ଜୀବାଶ୍ମର ଅସ୍ଥିରେ ଥିବା ଜୀବସତ୍ତା ୫୦୦୦ ବର୍ଷ ପରେ କ୍ଷୟ ହୋଇଥାଏ । ତେଣୁ ସାଢ଼େ ଛଅ କୋଟି ବର୍ଷ ତଳର ଡାଇନୋସର-DNA ମିଳିଛି... ଏକଥାକୁ ସେମାନେ ବିଶ୍ୱାସ କରୁନାହାଁନ୍ତି । ସେମାନଙ୍କର ଯୁକ୍ତି ଡାଇନୋସରକୁ ମଣିଷ ଯଦି ଦେଖି ନାହିଁ, ତେବେ ତା'ର DNAକୁ

ଚତୁର କୁନାକୁନିଙ୍କ ମନରେ ପ୍ରଶ୍ନ... ଡାଇନୋସର ସବୁ ଖାଇବେ କ'ଣ ? ସବୁ ଗଛରେ ଏବେ ତ ମହକିଆ ଫୁଲ । ଡାଇନୋସର ଫୁଲ ଦେଖି ନଥିଲା । ଫୁଲ ଦେଖି ମୁହଁ ବୁଲେଇନେବ । କଣ୍ଟାରେ ମୁହଁ ଫୋଡ଼ି ହୋଇଯିବ । ଟାଣ ଟାଣ ଡାଳକୁ ଚୋବାଉ ଚୋବାଉ ଦାନ୍ତ ଭାଙ୍ଗିଯିବ । ଗହମ, କୁଣ୍ଡା ବିରି କ'ଣ ସେମାନେ ଖାଇପାରିବେ ? ସାରା ପୃଥିବୀରେ ବିଷାକ୍ତ ଧୂଆଁ... ଚିମିନି ଧୂଆଁ... ଗାଡ଼ି ମଟରର ଧୂଆଁ । ପାଣିରେ, ରାସାୟନିକ ପଦାର୍ଥ ମିଶିଯାଉଛି ପ୍ରତିଦିନ । ଡାଇନୋସରମାନେ ବଞ୍ଚିବେ କେମିତି ?



ଛୀଅନ୍ତା ନ ହେଲେ ବି ଡାଇନୋସରର ଭଳି ଭଳି ପ୍ରତିମା ଗଢ଼ା ହେଉଛି ସାରା ପୃଥିବୀରେ... ପାର୍କ ନିର୍ମାଣ ହେଉଛି । କମ୍ପ୍ୟୁଟରରେ ଜୀବନ୍ତ ଭଳି ଡାଇନୋସରମାନେ ନାଚକୁଦ କରି ପାରୁଛନ୍ତି... ଶବ୍ଦ କରି ପାରୁଛନ୍ତି । ମିଉଜିୟମରେ ଖୁବ୍ ବଡ଼ ବଡ଼ ହାଡ଼ ସାଇତା ହୋଇ ରହିଛି । ଡାଇନୋସର ଖେଳନା ଓ ଛବି ତିଆରି ହେଲାଣି । ସ୍ୱପ୍ନ ଯେମିତି ମନକୁ ଆସୁଛି । ଡାଇନୋସର ଏବର ବିଶ୍ୱ ଶିଶୁଙ୍କ ମନକୁ ଆସିଛି ସେମିତି ।

ଆଉ ଥରେ ସ୍ୱପ୍ନ ଦେଖିବାକୁ କାହାର ବା ଇଚ୍ଛା ହେବ ନାହିଁ ? ଘଡ଼ିଏ ଆଖି ବୁଜି ତେଣୁ ସ୍ୱପ୍ନ ଦେଖିବା ଚାଲ... । ଜୁରାସିକ ପାର୍କର ସ୍ୱପ୍ନ । କ୍ରେଟାସିଅସ ଯୁଗରେ ଜହ୍ନ-ଜୁଆର ଓ ଫୁଲ ଆସିବାର ସ୍ୱପ୍ନ... ।



# ଡାଇନୋସର ପାଗଳ ଏବର ପୃଥିବୀ

ଡାଇନୋସର ପାଇଁ ସବୁଠି ଉତ୍କଣ୍ଠା । ସିନେମା 'ଜୁରାସିକ ପାର୍କ' ଯେଉଁଠି ପ୍ରଦର୍ଶିତ ହେଲା, ସେଠି ଭିଡ଼ । ପିଲାଙ୍କ ପୋଷାକରେ, ବସ୍ତାନିରେ, ବଜାରକୁ ନେଉଥିବା ବ୍ୟାଗରେ ଡାଇନୋସରର ଚିତ୍ର ଦିଆଯାଉଛି । ଖେଳନା ସବୁ ଡାଇନୋସରମାନଙ୍କୁ ନେଇ । ଡାକଟିକଟରେ ବି ଡାଇନୋସର । ଭିଡ଼ିଓଗେମ୍ ହେଲାଣି ଡାଇନୋକୁ ସମ୍ପର୍କୀତ କରି । ପାର୍କମାନଙ୍କରେ ଓ ପ୍ରଦର୍ଶନୀ ପଡ଼ିଆରେ ଡାଇନୋସରମାନଙ୍କ ପ୍ରତିମୂର୍ତ୍ତି । ସାଇକେଲର ନାଆଁ ଦିଆହେଉଛି 'ଡାଇନୋସର' । ଖାଇବା ପାଇଁ ଜଳଖିଆର ନାମ 'ଡାଇନୋସର' । ସାରା ପୃଥିବୀ ଏବେ ଡାଇନୋସର-ପାଗଳ ।

ପୃଥିବୀର ବଡ଼ ବଡ଼ କମ୍ପାନୀମାନେ ସର୍କସବାଲାଙ୍କ ଭଳି ଡାଇନୋସର ତିଆରି କଲେଣି । ଏଦିଗରେ ଜାପାନ ଓ ଆମେରିକା ଖୁବ୍ ଆଗୁଆ । ଆମ ଭାରତବର୍ଷ ଏହି ଦୌଡ଼ରେ ପଛେଇ ଯାଇ ନାହିଁ । ଜାତୀୟ ବିଜ୍ଞାନ-ଯାଦୁଘର ପରିଷଦ (NCSM)ର ବୈଜ୍ଞାନିକମାନେ ବିଭିନ୍ନ ଡାଇନୋସରର ପ୍ରତିକୃତି ନିର୍ମାଣ କରି ତାକୁ କମ୍ପ୍ୟୁଟର ଦ୍ୱାରା ନିୟନ୍ତ୍ରଣ କରୁଛନ୍ତି । ୧୯୯୫ ସାଧାରଣତନ୍ତ୍ର ଦିବସରେ ବିଶାଳକାୟ ଡାଇନୋସର ପ୍ରଦର୍ଶିତ ହୋଇଥିଲା । ଏହାକୁ ଦେଖି ଶୋଭାଯାତ୍ରାରେ ଯାଉଥିବା ହାତୀ ମଧ୍ୟ ତରକି ଉଠୁଥିଲା । ନୂଆଦିଲ୍ଲୀର ବେଲୁନ ମେଳାରେ ମଧ୍ୟ ବେଲୁନ ଡାଇନୋସର ଉଡ଼ି ପାରିଛି ।



ଲୁହାଛଡ଼ରେ ଡାଇନୋସରମାନଙ୍କର ପ୍ରତିକୃତି ଗଢ଼ାଯାଇ ତା' ଉପରେ ପ୍ଲାଷ୍ଟିକର ଆବରଣ ଓ ମସୃଣ ରବର ଢାଙ୍କି ଦିଆଯାଉଛି । ଚର୍ମର ଆକାର ପ୍ରକାର ଖୁବ୍ ସାବଧାନତାର ସହ ପ୍ରସ୍ତୁତ କରାହୋଇଛି । ଦିଲ୍ଲୀର ଶ୍ରୀରାମ ଇନ୍‌ଷ୍ଟିଚ୍ୟୁଟ ଏହି କାର୍ଯ୍ୟପାଇଁ ଦକ୍ଷତା ହାସଲ କରିଛି ।





ଲୁହାଛଡ଼ରେ ଡାଇନୋସରର ନକ୍ସା ପ୍ରସ୍ତୁତ ହେଉଛି

କଲିକତାର 'ବିଜ୍ଞାନ-ନଗର'ରେ ଭାରତୀୟ ବୈଜ୍ଞାନିକ ଓ ଶିଳ୍ପୀମାନଙ୍କ ଦ୍ଵାରା ପ୍ରସ୍ତୁତ ୧୪ଟି ବିଭିନ୍ନ ଡାଇନୋସରକୁ ପ୍ରଦର୍ଶିତ କରାଯାଇଛି । ଦିଲ୍ଲୀ, ବାଙ୍ଗାଲୋର ମାଡ୍ରାସ ଓ ଭୁବନେଶ୍ଵରରେ ଡାଇନୋସର ପ୍ରଦର୍ଶିତ ହେବ ।




ଆକାଶରେ ଉଡୁଥିବା ଡାଇନୋସର- ବେଲୁନ୍



# ଏକାଳରୁ ସେ କାଳ

## କେତେ ଯୁଗ ?

ସମୟକୁ ସିନା ଆଖି ପାଏ ନାହିଁ । ହେଲେ ସମୟ ଚିହ୍ନ ରଖିଯାଏ ! ସେଇ ଚିହ୍ନକୁ ମାଟିତଳ ପଥର ଭିତରୁ ଆଖି ଖୋଜିପାରେ, ଚିହ୍ନିପାରେ । ମନେହୁଏ ସ୍ତର ସ୍ତର ପଥର ଯେମିତି ସ୍ତର ସ୍ତର ସମୟ । ବୈଜ୍ଞାନିକର ଆଖି ଖେଦି ଯାଇଛି ସାରା ଧରିତ୍ରୀର ମାଟିକୁ ଦେଖିଛି ତଳକୁ ଗଭୀର ଭୂଗର୍ଭକୁ । ପଥରସବୁ ନିଆରା ସ୍ତରସବୁ ଭିନ୍ନ । କଳନା କରି ସେ କହି ପାରୁଛି ପୃଥିବୀର ବୟସ ।

ଏଇ ପୃଥିବୀଟା ଆଜକୁ ପାଞ୍ଚଶହ କୋଟି ବର୍ଷତଳେ ଜନ୍ମ ନେଇଥିଲା । ଧୂ ଧୂ ହୋଇ ଜଳୁଥିବା । ନିଆଁ ଝୁଲର ପେଣ୍ଡୁଟାଏ କି ଆଉ ! ତତଲା କ୍ଷୀରରେ ସର ପଡ଼ିଲା ପରି ସେଇ ତତଲା ପେଣ୍ଡୁଟାର ଚାରିକାତି ସର ପଡ଼ିଗଲା । ସେ ଥଣ୍ଡା ପାଲଟିବାକୁ ଲାଗିଲା । ଏମିତି କଟିଗଲା ୪୫୦ କୋଟି ବର୍ଷ । ଏହି ସମୟକୁ କୁହାଯାଏ 'ପ୍ରାକ୍ ଆଦିକାଳ' (ପ୍ରି-କାମ୍ବ୍ରିଆନ) । ଆଜକୁ ପାଞ୍ଚଶହ କୋଡିଏ ନିୟୁତ ବର୍ଷତଳେ ପିଠିକୁ ମୋଟା ଖୋଳପାରେ ଘୋଡେଇ ହୋଇ ଜୀବନ ଆସିଥିଲା ପୃଥିବୀକୁ । ପ୍ରଥମ ଜୀବନ... ଦୋଳି ଖେଳିଥିଲା ପାଣିରେ... । ଏହି ସମୟକୁ ବୈଜ୍ଞାନିକମାନେ କହନ୍ତି 'ପାଲିଓଜୋଇକ କାଳ' । 'ପାଲିଓଜୋଇକ' ଗ୍ରୀକ୍ ଶବ୍ଦଟିଏ । 'ପାଲିଓ'ର ଅର୍ଥ ଆଦି; 'ଜୋଇକ୍'ର ଅର୍ଥ ପ୍ରାଣ ବା ଜୀବନ । ତେଣୁ ଏଇ କାଳକୁ ଆମ ଭାଷାରେ କୁହାଯିବ ''ଆଦି-ଜୀବନର କାଳ'' । ଏହି କାଳର ମୋଟ ସମୟ-ସ୍ଥିତି: ୩୪୫ ନିୟୁତ ବର୍ଷ । ଏହି ସମୟକୁ ଛଅ ଯୁଗରେ ବିଭକ୍ତ କରାଯାଇଛି । ପ୍ରଥମ ତିନୋଟି ଯୁଗ ହେଲା– ''କାମ୍ବ୍ରିଆନ ଯୁଗ' 'ଅର୍ଡୋଭିସିଆନ ଯୁଗ' ଏବଂ 'ସିଲୁରିଆନ ଯୁଗ' ।



ଡିଭୋନିଆନ ଯୁଗ



ଅର୍ଡୋଭିସିଆନ ଓ ସିଲୁରିଆନ ଯୁଗ



କାମ୍ବ୍ରିଆନ ଯୁଗ

ସମୁଦ୍ର ଗେଣ୍ଡା, ଶାମୁକା, ବିଛା ଓ କଙ୍କଡ଼ାର ଅତି ପ୍ରାଚୀନ ରୂପ ଦେଖିବାକୁ ମିଳେ ଏଇ ତିନିଯୁଗରେ ।

ଶେଷ ତିନୋଟି ଯୁଗ ହେଲା– 'ଡିଭୋନିଆନ', 'କାର୍‌ବୋନିଫେରସ' ଏବଂ 'ପରମିଆନ ଯୁଗ' । ଏହି ସମୟରେ ମାଛ,



ଉଭୟଚର ଏବଂ ସରୀସୃପ ଜୀବନର ବିକାଶ ଘଟିଥିଲା । ଏହି ସରୀସୃପମାନେ ହିଁ ପରବର୍ତ୍ତୀ କାଳରେ ଅତିକାୟ ଜୀବରେ ପରିଣତ ହେଲେ ଓ ମାଟି ଉପରେ ଚାଲିଲେ । 'ଡିମେଟ୍ରୋଡନ', ସଲଟୋପୋସୁକସ' ଓ 'ସିମୋରିଆ' ପ୍ରଭୃତି ଏ ଯୁଗର ପରିଚିତ ଜୀବ ।

ଦୁଇଶହ ପଚାଶ ନିୟୁତ ବର୍ଷତଳେ ଆରମ୍ଭ ହୋଇଥିଲା ଏହି ''ମଧ୍ୟ-ଜୀବନର କାଳ'': ମେସୋଜୋଇକ ('ମେସୋ'- ମଧ୍ୟ, 'ଜୋଇକ'- ପ୍ରାଣ ବା ଜୀବନ) ଏହି କାଳକୁ ତିନି ଯୁଗରେ ବିଭକ୍ତ କରାଯାଇଛି– 'ଟ୍ରାଇଆସିକ', 'ଜୁରାସିକ' ଏବଂ 'କ୍ରୋଟାସିଅସ' ।

**ଟ୍ରାଇଆସିକ** ଯୁଗ ଥିଲା ୩୨ ନିୟୁତ ବର୍ଷ, ଜୁରାସିକ ଯୁଗର ବ୍ୟାପ୍ତି ୫୭ ନିୟୁତ ବର୍ଷ ଏବଂ କ୍ରୋଟାସିୟସ ଯୁଗର ସମୟ ୭୧ ନିୟୁତ ବର୍ଷ ।

ଟ୍ରାଇଆସିକ ଯୁଗରେ ପୃଥିବୀରେ ଥିଲା ମରୁଭୂମି, ଗୁଳ୍ମପୂର୍ଣ ପାହାଡ଼ ଓ ବାଲିପଥର । ସମୁଦ୍ର ଥିଲା ଉଷୁମ; ବାୟୁମଣ୍ଡଳ ତତଲା ଏବଂ ଶୁଖିଲା । ଜଳବାୟୁ ଶେଷ ଆଡ଼କୁ ଆର୍ଦ୍ର ହେବାକୁ ଲାଗିଲା । ଗଛ କହିଲେ ସିକାଡ୍, କୋନିଫୋରସ ଏବଂ ଫର୍ଣ ଜାତୀୟ ଗଛ । ଗଛରେ ଫୁଲ ନଥିଲା କି ଫଳ ନ ଥିଲା । ଜର୍ମାନୀରେ ଥିବା ତିନି ସ୍ତରିଆ ପାହାଡଟି ଏ ଯୁଗର ବୋଲି ମନେ କରାଯାଉଛି । ତିନିସ୍ତରିଆ ପାହାଡକୁ ନେଇ ଏ ଯୁଗର ନାମକରଣ ହୋଇଛି 'ଟ୍ରାଇଆସିକ' । ('ଟ୍ରାଇଆସ' ଏକ ଜର୍ମାନ ଶବ୍ଦ । ଏହାର ଅର୍ଥ ହେଉଛି ତିନିସ୍ତରରେ ଘଟିଥିବା ଘଟଣା) । ଏହି ଟ୍ରାଇଆସିକ୍ ଯୁଗର ପୃଥିବୀରେ ଖଣ୍ଡେ ମାତ୍ର ଭୂଖଣ୍ଡ ଥିଲା । ଏହାକୁ କୁହାଯାଏ 'ପାଙ୍ଗିଆ' । ସମୁଦ୍ର ଥିଲା ଏକାକାର । ପନ୍ଥାଲାସା ସେଇ ସମୁଦ୍ରର ନାଆଁ । ସମୁଦ୍ର ଥିଲା ଏକାକାର । ପନ୍ଥଲାସା ସେଇ ସମୁଦ୍ରର ନାଆଁ । ପୂର୍ବାଞ୍ଚଳର ସାଗରକୁ 'ଟେଥିସ' ସାଗର କୁହାଯାଏ । ସ୍ଥଳଭାଗ ଥିଲା ମରୁଭୂମି । ସରୀସୃପମାନେ ସାରା ଭୂଖଣ୍ଡରେ ଚଳପ୍ରଚଳ କରୁଥିଲେ । ସ୍ତନ୍ୟପାୟୀ ଜୀବ ଏଇ ସମୟରୁ ହିଁ ସୃଷ୍ଟି ହୋଇଥିଲେ । ଏ ସମୟରେ ଯେଉଁ ଡାଇନୋସର ଦେଖା ଦେଇଥିଲେ ସେମାନେ ଖୁବ୍ ଛୋଟ ଆକାରର ଥିଲେ । ବିଶ୍ୱାସ ନ ହେଲେ ବି ସେମାନଙ୍କର ଲମ୍ବ ଥିଲା ମାତ୍ର ଛଅ ଇଞ୍ଚ ।

**ଜୁରାସିକ** ଯୁଗର ଆରମ୍ଭ ୧୯୩ ନିୟୁତ ବର୍ଷ ତଳୁ । ସେ ଯୁଗରେ ଆକାଶ ମେଘାଚ୍ଛନ୍ନ ରହୁଥିଲା; ଘନ ଘନ ବର୍ଷା ହେଉଥିଲା; ଜଳବାୟୁ ଥିଲା ଅର୍ଦ୍ଧଉଷ୍ଣ । ସମୁଦ୍ର ପତ୍ତନ ବଢୁଥିଲା ଓ ସ୍ଥାନେ ସ୍ଥାନେ ସ୍ଥଳଭାଗକୁ ମାଡ଼ି ଆସୁଥିଲା । ଚାରିଆଡ଼େ ଘଞ୍ଚ ଜଙ୍ଗଲ, ସନ୍ତସନ୍ତିଆ ଜଳଭୂମି, ହ୍ରଦ ଓ ଗହିରିଆ ନଦୀ । ଉଚ୍ଚ ପାହାଡ଼ସବୁ କ୍ଷୟ ହୋଇ କ୍ଷୁଦ୍ର ମୁଣ୍ଡିଆର ଆକାର ଧାରଣ କରୁଥିଲା । ଚୂନପଥର ଓ ପଙ୍କୁଆମାଟିର ସ୍ତର ଥିଲା ଭୂପୃଷ୍ଠରେ । ଫ୍ରାନ୍ସ ଓ ସ୍ୱିଜରଲ୍ୟାଣ୍ଡରେ ଆବିଷ୍କୃତ 'ଜୁରା' ପାହାଡ଼ର ନାଆଁକୁ ନେଇ ଏଇ 'ଜୁରାସିକ ଯୁଗ'ର ନାମକରଣ । ଏ ଯୁଗରେ ବି ଗଛମାନଙ୍କରେ ଫୁଲ ଫୁଟୁ ନଥିଲା । ଫୁଲ-ଫୁଲିଆ ଶଙ୍କୁ (କୋନ୍) ଭଳି ଫଳ ଓ ମଞ୍ଜିସବୁ ଗଛରେ ଦେଖାଯାଉଥିଲା । ପ୍ରଚୁର ଗୁଳ୍ମ ଓ ପତ୍ର ମିଳୁଥିବାରୁ ଅତିକାୟ ତୃଣଭୋଜୀ ଡାଇନୋସରମାନେ ଦେଖାଯାଇଥିଲେ ।

ପରବର୍ତ୍ତୀ ଯୁଗ **''କ୍ରୋଟାସିଅସ'** ଯୁଗ । ଆଜିଠୁ ୧୩୬ ନିୟୁତ ବର୍ଷ ତଳେ ଏହି ଯୁଗର ଆରମ୍ଭ । କୁହାଯାଏ ଏହି ଯୁଗରେ ଜହ୍ନ ଆସିଲା... ଓ ଜହ୍ନ ଜୁଆର ଆଣିଲା । ଗଛମାନଙ୍କରେ ଫୁଲ ଫୁଟିଲା । ଜହ୍ନରାତି ଓ ଫୁଲ ଯେଉଁ ସମୟ ଆଣିଲା, ସେଇ ସମୟରେ ପୃଥିବୀର ମାଟି ଫାଟିବାକୁ ଲାଗିଲା । ପାଙ୍ଗିଆ ଖଣ୍ଡ ଖଣ୍ଡ ହୋଇଗଲା । କେହି କେହି ବିଶେଷଜ୍ଞ କହନ୍ତି ଯେ ଆଫ୍ରିକା, ଭାରତ ଓ ଉତ୍ତର ଆମେରିକା ଉତ୍ତର ଦିଗକୁ ଘୁଞ୍ଚି ଘୁଞ୍ଚି ଗଲେ । ହିମାଳୟ



ଓ ଆଣ୍ଡସ୍ ପର୍ବତ ସମୁଦ୍ର ଭିତରୁ ମୁଣ୍ଡଟେକି ଉଠିଲା । ଋତୁଚକ୍ରର ଘନ ଘନ ପରିବର୍ତ୍ତନ ହେଲା । ପୃଥିବୀରେ ପତଙ୍ଗମାନେ ଦେଖାଦେଲେ । ଫୁଲରେ ମହୁ ଆସିଲା, ଚିରହରିତ୍ ବୃକ୍ଷମାନେ ପତ୍ରଝଡ଼ା ଦେଲେ । ଡିମିରି ଓ ସେହି ଜାତିର ଗଛ ସହ ଟାଣ ଓ ଟାଆଁସା ପତ୍ରଥିବା ନୂଆ ନୂଆ ଗଛସବୁ ଜନ୍ମ ହେଲେ । ଏ ଯୁଗରେ ଡାଇନୋସରମାନେ ପ୍ରବଳ ପ୍ରତାପୀ ହୋଇ ଉଠିଲେ । କୁହାଯାଏ କୌଣସି ଅଜ୍ଞାତ କାରଣରୁ ସମ୍ଭବତଃ ଏଭଳି କିଛି ବିପ୍ରାତ ହେଲା, ଯାହା ଫଳରେ ଅତିକାୟ ଡାଇନୋସରମାନେ ସମୂଳେ ଧ୍ୱଂସ ପାଇଗଲେ ।

ପରବର୍ତ୍ତୀ ଯୁଗ: ସିନୋଜୋଇକ ଯୁଗ । ୬୫ ନିୟୁତ ବର୍ଷତଳେ ଏଇ ଯୁଗର ଆରମ୍ଭ । ଓଡ଼ିଆ ଭାଷାରେ ଏହା ହେଉଛି ''ଚଳିତ ଜୀବନର କାଳ'' । ଏହି କାଳରେ ସ୍ତନ୍ୟପାୟୀ ଜୀବ ସୃଷ୍ଟି ହେଲେ । ଏ ଯୁଗ ଆମ ନିଜ ଯୁଗ ।

## ପ୍ରଳୟରୁ ପ୍ରଳୟ ଯାଏ

୧୯୯୪ର ଜୁଲାଇ ମାସ । ସବୁଠି ଉତ୍କଣ୍ଠା ଓ ଚହଳ । ଧୂମକେତୁ ''ସୁମେକର ଲେଭି-୯'' ଭାଙ୍ଗି ପଡ଼ିବ ବୃହସ୍ପତି ଉପରେ । ସତକୁ ସତ ଧୂମକେତୁର ୨୦ଟି ଶିଳାଖଣ୍ଡ ଗୋଟିକ ପରେ ଗୋଟିଏ ଧକ୍କା ଖାଇଲା ବୃହସ୍ପତି ମାଟିରେ । ସେକେଣ୍ଡକୁ ୬୦ କିଲୋମିଟର ବେଗରେ ଯଦି ଏକ କିଲୋମିଟର ଲମ୍ବର ଶିଳାଖଣ୍ଡଟିଏ ଧକ୍କା ଖାଏ, ତେବେ ତାହା ୨୫୦୦ ଟି.ଏନ୍.ଟି. ବୋମାର ବିସ୍ଫୋରଣ ଘଟାଇ ପ୍ରଳୟ ସୃଷ୍ଟି କରିବ । 'ସୁ-ମେକର ଲେଭି-୯'ର ଗୋଟିଏ ଗୋଟିଏ ଶିଳାଖଣ୍ଡ ୧୦ କିଲୋମିଟର ଲମ୍ବ ଥିଲା । ଏପଟେ ପୃଥିବୀ ଓ ଆମେ । ବୃହସ୍ପତିର ସେପଟେ ଧୂମକେତୁର ଭଗ୍ନାଂଶ ଗୋଟିକ ପରେ ଗୋଟିଏ ଧକ୍କା ଖାଇ ବିସ୍ଫୋରଣ ସୃଷ୍ଟି କରିଥିଲା । ୧୯୯୪ ଜୁଲାଇ ୧୮ରୁ ୨୪ ତାରିଖ ଯାଏ ଏହି ଘଟଣା ଘଟୁଥିଲା ବୃହସ୍ପତିରେ । ଦୂରବୀକ୍ଷଣ ଯନ୍ତ୍ରରେ




ଧୂମକେତୁ 'ସୁମେକର ଲେଭି-୯' ବୃହସ୍ପତିରେ ଧକ୍କା ଖାଇବାର ଦୃଶ୍ୟ





ସେ କଥା ବୈଜ୍ଞାନିକମାନେ ଦେଖିଛନ୍ତି । ବାହ୍ୟ ଶିଳାଖଣ୍ଡ ର ଧକ୍କା ଓ ଅଗ୍ନିବର୍ଷଣ ଯୋଗୁ ବୃହସ୍ପତି ପୃଷ୍ଠରେ କଳାଚିହ୍ନମାନ ଦେଖାଯାଇଥିଲା । ଏହି କଳାଚିହ୍ନ, ସୃଷ୍ଟି ହୋଇଥିବା ବଡ଼ ବଡ଼ ଗାତର ଛାଇ ।

ଧକ୍କାବେଳେ ଉଜ୍ଜଳି ଉଠିଥିବ ବୃହସ୍ପତିର ଆକାଶ । ତାତି ଉଠିଥିବ ପରିବେଶ । ବୃହସ୍ପତିରେ ଜୀବଜଗତ ଯଦି ଥାଆନ୍ତେ ନିମିଷକରେ ବିଲୋପ ହେବାର ଦୃଷ୍ଟାନ୍ତ ମିଳିଯାଇଥାନ୍ତା ମଣିଷଙ୍କୁ ।

ଆମ ଆଖି ଦେଖନ୍ତରେ ପ୍ରଳୟ ଘଟିଥିଲା ୧୯୦୮ ମସିହା ଜୁନ୍‌ମାସ ତିରିଶ ତାରିଖରେ । ସାଇବେରିଆର ଭାନାଭରଠୁ ୬୪ କିଲୋମିଟର ଦୂରରେ ''ପଡ଼କାମେନ୍ନାୟା ତୁଙ୍ଗୁସ୍କା'' ନଦୀର ଅବବାହିକା । ମଧ୍ୟରାତ୍ର ବାରଟା ୧୭ ମିନିଟ୍, ୧୧ ସେକେଣ୍ଡ । ୩୯୦୦ କିଲୋମିଟର ବ୍ୟାପୀ ଅଞ୍ଚଳରେ ସେଇ ରାତିରେ ବିସ୍ଫୋରଣଟିଏ ଘଟିଲା । ମହାକାଶରୁ ଗୋଟିଏ ୩୦ ମିଟର ଲମ୍ବର ଶିଳାଖଣ୍ଡ ସୁପରସୋନିକ ଗତିରେ ଖସି ଆସୁ ଆସୁ ଭୂପୃଷ୍ଠରୁ ୧୦ କିଲୋମିଟର ଉଚ୍ଚରେ ଭାଙ୍ଗି ପଡ଼ିଥିଲା ଓ ସେହି କାରଣରୁ ଅଗ୍ନିବର୍ଷଣ ଫଳରେ ସେଇ ଇଲାକାର ସମସ୍ତ ଜୀବନ ଓ ବୃକ୍ଷଲତା ଲୋପ ପାଇଗଲା । କଳନା କରାଯାଇଛି ଯେ ଏହି ବିସ୍ଫୋରଣ ୧୦ରୁ ୧୫ ମେଗାଟନ ବୋମା ବିସ୍ଫୋରଣ ସହ ସମାନ ।

ଗତ ଛଅ ଶହ ନିୟୁତ ବର୍ଷ ଭିତରେ ମହାକାଶରୁ ୨୦୦୦ଟି ଶିଳାଖଣ୍ଡ ଏହିଭଳି ପୃଥିବୀରେ ଧକ୍କା ଖାଇଛି । ଏ ପର୍ଯ୍ୟନ୍ତ ମାତ୍ର ୧୦୨ଟି ସ୍ଥାନକୁ ବୈଜ୍ଞାନିକମାନେ ଚିହ୍ନଟ କରିଛନ୍ତି ।

ଆଜକୁ ପଚାଶହଜାର ବର୍ଷତଳେ ଆମ ଭାରତବର୍ଷରେ ଏଭଳି ଏକ ମହାକାଶୀ ବିପ୍ଲବ ଘଟିଥିଲା । ଏକ ବାହ୍ୟଶିଳା ଖଣ୍ଡର ଆଘାତରେ ମହାରାଷ୍ଟ୍ରର କେନ୍ଦ୍ରଭାଗରେ ଗର୍ତ୍ତଟିଏ ସୃଷ୍ଟି ହୋଇଥିଲା । ବମ୍ବେଠାରୁ ୬୭୫ କିଲୋମିଟର ଦୂରରେ ଥିବା 'ଲୋନାର ହ୍ରଦଟି' ହିଁ ଏହି ଗର୍ତ୍ତ । ଏହି ହ୍ରଦର ଲମ୍ବ ୧୮୦୦ ମିଟର ଗଭୀରତା ୧୭୦ ମିଟର । ହ୍ରଦର ଜଳ ଲବଣାକ୍ତ । ଚାରିପାଖେ ତରଳ ପଥରର ଏକ ୨୦ ମିଟର ଉଚ୍ଚର ବନ୍ଧ ରହିଛି । ହ୍ରଦ ପାର୍ଶ୍ୱରୁ ମିଳିଥିବା କାଚଖଣ୍ଡସହ ଚନ୍ଦ୍ରଗ୍ରହରୁ ଆପୋଲୋ ମହାକାଶଯାତ୍ରୀଙ୍କ ଦ୍ୱାରା ସଂଗୃହୀତ ମୃତ୍ତିକାରେ ଥିବା କାଚଖଣ୍ଡର ସାଦୃଶ୍ୟ ଅଛି । ଏହି ହ୍ରଦତଳୁ 'ମାସ୍କେଲିନାଇଟ' ଭଳି ଦୁର୍ଲଭ ଧାତବ ମିଳୁଛି । ଅତ୍ୟଧିକ ଉତ୍ତାପରେ ହିଁ 'ପ୍ଲାଜିଓକ୍ଲେସ ଫେଲସ୍ପାର' 'ମାସ୍କେଲିନାଇଟ' କୁ ରୂପାନ୍ତରିତ ହୁଏ । ତେଣୁ ବିଶ୍ୱାସ କରାଯାଉଛି ଯେ ଏହି ଲୋନାର ଗର୍ତ୍ତଟି ମହାଶୂନ୍ୟରୁ ଖସିପଡ଼ିଥିବା ଶିଳାଖଣ୍ଡଦ୍ୱାରା ସୃଷ୍ଟ ।

ଦକ୍ଷିଣ ଭାରତରେ ମାଇଲ ମାଇଲ ବ୍ୟାପୀ ବୋହିଯାଇଥିବା ବାସାଲ୍ଟ ପଥରର ଇଲାକା ସାରା ଭାରତବର୍ଷର ୬ ଭାଗରୁ ଏକଭାଗ । ହଠାତ୍ ଜୀବନର ଯବନିକା ଟାଣି ଦେଇଥିବା ପ୍ରଳୟର ମୂକସାକ୍ଷୀ ଏଇ ଅଞ୍ଚଳ । ଭାରତବର୍ଷରେ ମିଳିଥିବା ଡାଇନୋସରର କିଛି ଜୀବାଶ୍ମ ମିଳୁଛି ଜବଲପୁରର ବଡ଼ ସିମଲା ପାହାଡ଼, ନାଗପୁରର ଟକଲି ଓ ଉମରେର, ଚନ୍ଦା ଜିଲ୍ଲାର ପିସଡୁରା, ତିରୁଚିରାପଲ୍ଲୀର ଏରିୟାଲୁ ଅଞ୍ଚଳରେ । ମାତ୍ର



ଗୋଟିଏ ବିଶାଳ ଉଲ୍କା ଖଣ୍ଡର ଆଘାତରେ ସୃଷ୍ଟି ହୋଇଥିବା 'ଲୋନାର ହ୍ରଦ' । ଏହା ତୃତୀୟ ବୃହତ୍ତମ ଗର୍ତ୍ତ ।



କୌଣସି ଗୋଟିଏ ସ୍ଥାନରୁ ସଂପୂର୍ଣ୍ଣ ଗୋଟିଏ କଙ୍କାଳ ମିଳିନାହିଁ ବୋଲି ଭାରତୀୟ ଡାଇନୋସରର ରୂପକଥା ଲେଖା ହୋଇ ପାରୁନାହିଁ ।

ମହାଶୂନ୍ୟରୁ ଶିଳାବର୍ଷଣରେ ଡାଇନୋସର ଯୁଗର ବିଲୋପ ଘଟିଥିବାର ଭାବନା ଏବେ ଖୁବ୍ ଦୃଢ଼ତର ହେଲାଣି । ମେକ୍ସିକୋର 'ୟୁକାଟାନ ଅନ୍ତରୀପ' ପୋତି ହୋଇ ରହିଛି ଚୂନପଥରରେ । ଭୂପୃଷ୍ଠରୁ ଏକ କିଲୋମିଟର ତଳେ ଗୋଟିଏ ବୃହତ୍ତ ଗର୍ତ୍ତ ଆବିଷ୍କୃତ ହେଲାଣି । ଏହି ଗର୍ତ୍ତଟିର ଓସାର ୧୭୦ରୁ ୩୦୦ କିଲୋମିଟର । ସମ୍ଭବତଃ ଏହି ଗର୍ତ୍ତଟି ହେବ ପୃଥିବୀପୃଷ୍ଠରେ ଏଯାବତ୍ ଆବିଷ୍କୃତ ଗର୍ତ୍ତମାନଙ୍କ ଭିତରେ ସର୍ବବୃହତ୍ । ଡଃ ଓ୍ୱାରନର ଏବଂ ଶ୍ରୀମତୀ ଡଃ ଜୋଆନା ମରଗାନ କହନ୍ତି ଏହି ଗର୍ତ୍ତାଞ୍ଚଳରେ ପ୍ରଚୁର ସଲଫର ମିଳୁଥିବାରୁ ଅନୁମାନ ହେଉଛି ଯେ ଶିଳାଖଣ୍ଡର ସଂଘର୍ଷଜନିତ ଉତ୍ତାପ ଓ ସଲ୍ଫ୍ୟୁରିକ ଏସିଡ଼ ବର୍ଷା ଯୋଗୁ ଡାଇନୋସରମାନେ ବିଲୁପ୍ତ ହୋଇଗଲେ । ବାୟୁମଣ୍ଡଳରେ ଅମ୍ଳର ପ୍ରଭାବ ଦୀର୍ଘ ଚାଳିଶବର୍ଷ ଧରି ରହିଥିଲା । ତେଣୁ ଡାଇନୋସର ଜଗତ ସମୂଳେ ଧ୍ୱଂସ ହୋଇଗଲେ । ଅମ୍ଳବର୍ଷାରେ ଡାଇନୋସରର ବିଲୋପ ତତ୍ତ୍ୱ ଅନେକ ପ୍ରଶ୍ନବାଚୀ ଉଠାଏ । ତାହା ହେଉଛି ଏହି ଅମ୍ଳ ବର୍ଷାରେ ପତ୍ରପାଦପ ଓ ସ୍ତନ୍ୟପାୟୀ ଜୀବମାନେ ରକ୍ଷା ପାଇଲେ କିପରି ?

ଏକଥା ସତ ଯେ ନଭୋମଣ୍ଡଳରେ ପ୍ରଳୟ କେଉଁଠି ନା କେଉଁଠି ଘଟେ । କେବଳ ଉଲ୍‌କା ବା ଧୂମକେତୁମାନଙ୍କ ଆଘାତରେ ନୁହେଁ... ଫାଟି ପଡୁଥିବା ନକ୍ଷତ୍ରର ଉତ୍ତପ୍ତ ଖଣ୍ଡ ଛିଟିକି ଆସିଲେ ବି ପ୍ରଳୟ ଘଟିପାରେ । ସୁପରନୋଭା ନକ୍ଷତ୍ରର ତେଜସ୍କ୍ରିୟତାରେ ଅନ୍ୟଗ୍ରହର ବାୟୁମଣ୍ଡଳରେ ଉଷ୍ଣତା ବଢ଼େ ଓ ତାହା ଜୀବନ ବିନାଶକାରୀ ହୋଇଥାଏ । ମହାକାଶରେ ଏଭଳି ନକ୍ଷତ୍ର ବିସ୍ଫୋରଣ ଅତ୍ୟନ୍ତ ବିରଳ ହେଲେ ବି ଘଟିଥାଏ ।

ବୈଜ୍ଞାନିକମାନେ ବିଶ୍ୱାସ କରନ୍ତି ଯେ 'ପରମିଆନ ଯୁଗ'ର ଶେଷବେଳକୁ ହୁଏତ କୌଣସି ଧୂମକେତୁର ଧକ୍କା ହୋଇଥିଲା । ଫଳରେ ପୃଥିବୀରେ



କୌଣସି କ୍ଷୁଦ୍ର ଗ୍ରହ ଅଥବା ଧୂମକେତୁର ଧକ୍କା ପରେ ପୃଥିବୀରେ ଘଟିଥିବା ପ୍ରଳୟ

ବିରାଟକାୟ ସରୀସୃପଙ୍କର ବିନାଶ ଘଟିଲା ଓ ଟ୍ରାଇଆସିକ ଯୁଗର ଆରମ୍ଭ ହେଲା । ଡାଇନୋସରମାନେ ଦେଖାଦେଇଥିଲେ ଏଇ ଯୁଗରୁ । ବିନାଶ ପରେ ବିକାଶର ପକ୍ରିୟା ପ୍ରକୃତିର ନିୟମ । ଦ୍ୱିତୀୟ ପ୍ରଳୟ ହୁଏତ ଘଟିଥିଲା ଠିକ୍ କ୍ରେଟାସିୟସ ଯୁଗ ସରି ଆସିଲା ବେଳକୁ । ଧୂମକେତୁର ଧକ୍କା ଅଥବା କୌଣସି ସୁପରନୋଭା ନକ୍ଷତ୍ରର ବିସ୍ଫୋରଣର ପ୍ରଭାବ ଯୋଗୁଁ ଡାଇନୋସରମାନେ ବିଲୁପ୍ତ ହେବା ବିଶ୍ୱାସ ଯୋଗ୍ୟ । ବର୍ତ୍ତମାନର ପରମାଣୁବିତ୍ ବୈଜ୍ଞାନିକମାନେ ପରମାଣୁ ବିସ୍ଫୋରଣରେ ସୀମିତ ଧ୍ୱଂସର ସୂତ୍ର ପାଇଛନ୍ତି । ହୁଏତ କ୍ରେଟାସିୟସ ଯୁଗରେ ବିସ୍ଫୋରିତ ସୁପରନୋଭା ସେହିଭଳି ସୀମିତ ଧ୍ୱଂସ ସାଧନ କରିଥିବ । ଯଦିଓ ଅତିକାୟ ଡାଇନୋସରଙ୍କ ବିଲୟ ଘଟିଗଲା , ଅରଣ୍ୟାନୀ ନିଃଶେଷ ହୋଇଗଲା ନାହିଁ ।



ଗାତରେ ଓ ଗୁମ୍ଫାରେ ରହିଯାଇଥିବା ଜୀବଜନ୍ତୁର ବିନାଶ ହେଲା ନାହିଁ । ତେଣୁ ପୃଥିବୀରେ ଜୀବସତ୍ତା ରହିପାରିଲା । ମେସୋଜୋଇକ କାଳରେ ସ୍ତନ୍ୟପାୟୀ ଜୀବନର ଆକୃତି କ୍ଷୁଦ୍ର ଥିଲା । ଏମାନେ ହୁଏତ ଗାତୁଆ ବା ଗୁମ୍ଫାବାସୀ ଥିଲେ । ତେଣୁ ପ୍ରଳୟକାଳରେ ସେମାନେ ବଞ୍ଚିଗଲେ । କ୍ରେଟାସିୟସ ଯୁଗରେ ଜହ୍ନ ଯୋଗୁଁ ଯେଉଁ ଜୁଆର ଆସିଲା ତାହା ସମୁଦ୍ରକୁ ବିକ୍ଷୁବ୍ଧ କଲା ଏବଂ ଆରମ୍ଭ ହେଲା ଆନ୍ତର୍ଦେଶୀୟ ଭୂଚଳନ (Continental drifting) ଏବେ ବି ଏହି ଭୂଚଳନର ପକ୍ରିୟା ଚାଲିଛି । ବର୍ଷକୁ ୨.୫ ସେଣ୍ଟିମିଟର ମାଟି ଘୁଞ୍ଚି ଯାଉଛି ।

ପ୍ରଳୟରୁ ପ୍ରଳୟଯାଏ ରାଜୁତି କଲେ ଡାଇନୋସର । ସେଇ ଅତିକାୟ ଜୀବନକୁ ପୃଥିବୀ ଦେଖିଥିଲା ଦୀର୍ଘ ୧୬୦ ନିୟୁତ ବର୍ଷଧରି । କ'ଣ ପାଇଁ ଶେଷ ହୋଇଗଲା ସେମାନଙ୍କର ଜୀବନ ? ଅନେକ ମତ, କଳ୍ପନା-ଜଳ୍ପନା, ବାଦାନୁବାଦର ଶେଷ ନାହିଁ । ସତକଥା ଏତିକି, ଯେଉଁ ପୃଥିବୀରେ ସେମାନେ ଧପାଲି ଧପାଲି ଚାଲୁଥିଲେ... ଲଢୁଥିଲେ... ସେଇ ପୃଥିବୀକୁ ସେମାନେ ଛାଡି ଚାଲିଗଲେ । ମେଦିନୀର ଛାତିତଳେ ସେମାନଙ୍କର ସ୍ମୃତି, ସେମାନଙ୍କର ହାଡ଼ ଓ କଙ୍କାଳ । ତାହା ହିଁ କହୁଛି ଅତୀତର କଥା । ଗତାୟୁ ଜୀବନର କଥା । କ'ଣ ପାଇଁ ଡାଇନୋସରମାନେ ଲୋପ ପାଇଗଲେ ତାହା ଯେତିକି ବଡ଼ ନୁହେଁ... ସେମାନେ କେମିତି ବଞ୍ଚୁଥିଲେ... ସେମାନଙ୍କ ଜୀବନଯାପନର ରୀତି ଜାଣିବା ହେଉଛି ବୈଜ୍ଞାନିକମାନଙ୍କ ପାଇଁ ସବୁଠୁ ଗୁରୁତ୍ୱପୂର୍ଣ୍ଣ ।



## ଡାଇନୋସରକୁ ଦେଖିଛି କିଏ ?

ଦୁଇଶହ ପଚିଶ ନିୟୁତ ବର୍ଷତଳେ ଡାଇନୋସର ଥିଲା ଖୁବ୍ ଛୋଟ ଜୀବଟିଏ । ଶହେ ଷାଠିଏ ନିୟୁତ ବର୍ଷ ଭିତରେ ସେଇ ଛଅଇଞ୍ଚିଆ ଡାଇନୋସର ବଢ଼ିଗଲା ଲମ୍ବାରେ ୫୦ ଫୁଟ, ଡେଙ୍ଗାରେ ୨୦ ଫୁଟ । ଓଜନ ହୋଇଗଲା ୬ ରୁ ୭.୪ ଟନ । କାହା କାହାର ବେକର ଲମ୍ବା ହେଲା ୩୬ ଫୁଟ । ଡାଇନୋସରର ସବୁଠୁ ବଡ଼ ଅଣ୍ଡାର ଲମ୍ବା ୧୨ ଇଞ୍ଚ ଓ ମୋଟେଇ ୧୦ ଇଞ୍ଚ । ସେଇ ଅଣ୍ଡାଖୋଳରେ ୩.୩ ଲିଟର ପାଣି ରହି ପାରିବ ।

କ୍ରେଟାସିଅସ ଯୁଗରେ ପ୍ରଳୟ ହେଲା । ଲୋପ ପାଇଗଲେ ଏଇ ଅତିକାୟ ଜୀବମାନେ । ଗାତ ଭିତରେ ହୁଏତ ରହୁଥିଲେ ସ୍ତନ୍ୟପ୍ରାଣୀ ଜୀବ । ସେ କାଳରେ ସେମାନେ ବି ଖୁବ୍ ଛୋଟ ଥିଲେ ।

ଦୁଇ ନିୟୁତ ବର୍ଷତଳେ ଗରିଲାକାୟ ଥିଲା ମଣିଷ । ଭୂଚଳନରେ ଫାଟି ଯାଇଥିବା ମାଟି ସୃଷ୍ଟିକଲା ଆଜିର ଦେଶ-ମହାଦେଶ । ପୃଥିବୀର ଚାରିଆଡ଼େ ଆଜି ମଣିଷ । ସେ ହିଁ ସବୁଠୁ ପ୍ରତାପୀ ଜୀବ ପୃଥିବୀ ପୃଷ୍ଠରେ । କାନାଡା ସ୍ଥିତ ଅଟୱା ଜାତୀୟ ସଂଗ୍ରହାଳୟର ଡେଲ ରସେଲଙ୍କ ମତରେ **ଟ୍ରଡନ** ଜାତିର ଡାଇନୋସର ବଞ୍ଚି'ରହିଥିଲେ ଆଉ ଗୋଟିଏ ଦ୍ୱିପଦୀ ଅତିକାୟ ଜୀବନ ଧରିତ୍ରୀର ସର୍ବୋତ୍ତମ ଜୀବନ ଭାବରେ ପରିଗଣିତ ହୋଇଥାନ୍ତା ସେମାନଙ୍କର ସାଧାରଣ ଉଚ୍ଚତା ହୋଇଥାନ୍ତା ଦେଢ଼ମିଟର, ହାତର ଶକ୍ତ ପଂଝାରେ ମାତ୍ର ତିନୋଟି ଆଙ୍ଗୁଠି, ତୀକ୍ଷ୍ଣ ଆଖି ଓ ଧାଡି ଧାଡି ମୁନିଆ ଦାନ୍ତ ଥାଆନ୍ତା । ମଣିଷ ଭଳି ସେ ବି ବୁଦ୍ଧିମାନ ଜୀବଟିଏ ହୋଇଥା'ନ୍ତା । ଆଜି ମଣିଷ ନ ଥା'ନ୍ତେ....ଥାଆନ୍ତେ ସରୀସୃପୀୟ ଦୁଇଗୋଡ଼ିଆ ଟ୍ରଡନ । ଷ୍ଟିଭେନ ସ୍ପିଲବର୍ଗଙ୍କ ପରି ଷ୍ଟିଫେନ ବଙ୍କଲର ଜୁକ୍ସ ୧୯୮୯ ମସିହାରେ 'ଡାଇନୋସର' ନାମକ ଚଳଚ୍ଚିତ୍ରଟିଏ ପ୍ରସ୍ତୁତ କରିଥିଲେ । ଷ୍ଟିଭେନଙ୍କ ଚଳଚ୍ଚିତ୍ରର ନାୟକ ହେଲା 'ରେକ୍ସ', ଷ୍ଟିଫେନଙ୍କ ଛବିର ନାୟକ 'ଉରକ' । 'ଉରକ' ଗୋଟିଏ 'ଟ୍ରଡନ' ଡାଇନୋସର ।



ମଣିଷ ତ ଡାଇନୋସରକୁ ଦେଖି ନାହିଁ ! ମାତ୍ର 'ରେକ୍ସର' କଥା କହୁଛି, 'ଟ୍ରଡ଼ନ'ର କାହାଣୀ ଶୁଣାଉଛି । ଡାଇନୋସର ଦୁନିଆର ଗପ ଲେଖାଯାଉଛି । ନ ଦେଖି ଏତେ କଥା କୁହାଯାଉଛି କିପରି ? ଡାଇନୋସରର ଗତି, ପ୍ରକୃତି, ଖାଦ୍ୟାଭ୍ୟାସ, ଚର୍ମ ଓ ତା'ର ରଙ୍ଗ ଏବଂ ସ୍ୱର ସଂପର୍କରେ ବିଶଦ ବିବରଣୀ ସେ ଦେଇ ପାରୁଛି କିପରି ?

ମାଟିତଳୁ ହାଡ଼, ଖପୁରୀ ଓ ଦାନ୍ତ ମିଳୁଛି । ଏସବୁର ଆକାର ଦେଖି ସେ ବିସ୍ମିତ ହେବା ସ୍ୱାଭାବିକ । ମଣିଷର ସ୍ମୃତି ଅଛି । ସେ ମନେ ପକେଇପାରେ । ମନକୁ ଆସିଲା-ମାଟି ଉପରେ ଥିବା ଜୀବ ହାତୀ, ଗଣ୍ଡା ବିରାଟ । ଜଳରେ ତିମି ଓ ସାର୍କ ବିରାଟ । ମାତ୍ର ମାଟିତଳୁ ମିଳୁଥିବା ଜଂଘ ହାଡ଼, ଦାନ୍ତ ତ ସେମାନଙ୍କର ନୁହଁ ! କଳ୍ପନା ଅମଡ଼ା ମାଡ଼ିଯାଏ । ଆଖିବୁଜି ଭାବିଲା ମଣିଷ । ଗୋଟିଏ ଅତିକାୟ ଜୀବର ସ୍ୱରୂପ ଚେଇଁଉଠିଲା ମନରେ । ସେ ହିଁ ହେଲା ଡାଇନୋସର ।

ଖଣ୍ଡ ଖଣ୍ଡ ହାଡ଼ ସବୁକୁ ସେ ଯୋଡ଼ିଲା । ତାକୁ ତନ୍ନ ତନ୍ନ କରି ଦେଖିଲା । ଦାନ୍ତ...ମାଢ଼ି କାହାର କେମିତି । ଦାନ୍ତ କାହାର ଚକା ଚକା, କାହାର ପୁଣି ମୁନିଆ । ମାଢ଼ିର ଲମ୍ୱାକୁ ଦେଖି ଭାବିଲା ମୁହଁ କେମିତି ହୋଇଥିବ । ପାଟିର ଆଁ କେମିତି ହେବ ? ଖପୁରୀ ଦେଖି ଭାବିଲା ମୁଣ୍ଡଟା କେତେବଡ଼ ହୋଇଥିବ । ମୁଣ୍ଡରେ କେଉଁଠି ମସ୍ତିଷ୍କ ରହିଥିବ । ଭେଜା କେତେବଡ଼ ? ଲମ୍ୱା ବେକ ହାଡ଼ ଦେଖି ସେ ଆଶ୍ଚର୍ଯ୍ୟ ହେଲା । ଏତେ ଉଚ୍ଚା ବେକ ଉପରେ ମୁଣ୍ଡ । ସେଠିକି ରକ୍ତ ଉଠାଇବାକୁ କେଢ଼େ ଶକ୍ତ ହୋଇଥିବ ହୃତପିଣ୍ଡ ? ବଡ଼ ହୃତପିଣ୍ଡକୁ ଘୋଡ଼େଇ ରଖିବା ପାଇଁ ଛାତି କେମିତି ହୋଇଥିବ ? କେହି କେହି ଭାବିଲେ ଗୋଟାଏ ହୃତପିଣ୍ଡ ତ ଏତେ ଉଚ୍ଚାଯାଏ ରକ୍ତ ଉଠେଇ ପାରିବ ନାହିଁ ? ତେଣୁ ମନକୁ ଭାବନା ଆସିଲା ଡାଇନୋସରର ହୁଏତ ସାତ ଆଠଟା ଯାଏ ହୃତପିଣ୍ଡ ରହିଥାଇପାରେ ? ସମୁଦ୍ରରେ ଥିବା କଟଲ୍‌ଫିସ (cephalopoda)ର ଯଦି ତିନୋଟି ହୃତପିଣ୍ଡ ଅଛି ଡାଇନୋସରର ଆଠଟା ହୃତପିଣ୍ଡ ରହିଥିବ ବୋଲି ଭାବିବା ଅସଙ୍ଗତ ହେବ କାହିଁକି ?

ମାଟିତଳୁ ହାଡ଼ମାନ ଯେମିତି ମିଳୁଛି, ନରମ ପଥରରେ ଡାଇନୋସରମାନଙ୍କର ପଦଚିହ୍ନ ବି ନିଖୁଣ ଅବସ୍ଥାରେ ମିଳିପାରୁଛି । କାଦୁଅ ମାଟି ଓ ଚୂନମାଟି ଡାଇନୋସରର ଚମ ଚିହ୍ନକୁ ଅବିକଳ ସାଇତି ରଖିଛି । ମାଟିତଳୁ ସେମାନଙ୍କର ଅଣ୍ଡା ମିଳୁଛି । ଲଣ୍ଡା ଲଣ୍ଡା ଗୋବର ବି ମିଳିଛି । କଳ୍ପନା କରୁଛି ମଣିଷ......ପାଦ ତା'ର କେମିତି ହୋଇଥିବ । ସେ ଦୁଇଗୋଡ଼ରେ ଚାଲୁଥିଲା କିଚାରିଗୋଡ଼ରେ ଚାଲୁଥିଲା । ଚମ ତା'ର କିପରି ହୋଇଥିବ । ଅଣ୍ଡା ଭିତରୁ ଛୁଆ କେମିତି ଫୁଟୁଥିବ । ଅଫୁଟା ଅଣ୍ଡା ଭିତରେ ଡାଇନୋସର ଛୁଆର ଫସିଲ ବି ମିଳିଗଲାଣି । ତେଣୁ ମଣିଷ ଡାଇନୋସରର ଦୁନିଆ ସମ୍ପର୍କରେ କଥାସବୁ ଅନର୍ଗଳ ଗପିଯାଉଛି ।

ଆକସ୍ମିକ ଭାବେ ସେ କାଳର ମଶା ପେଟରୁ ଡାଇନେସର୍‌ର ରକ୍ତ ମିଳିଯାଇଛି । ହାଡ଼ ଦେହରେ ଲାଗିଥିବା ଜୈବିକ ପ୍ରୋଟିନ ମଧ୍ୟ ସଂଗୃହୀତ ହେଲାଣି ।

ବୈଜ୍ଞାନିକମାନେ ଗବେଷଣା କରି ଯେଉଁ କଥା କହୁଛନ୍ତି ଚିତ୍ରଶିଳ୍ପୀ ଅନୁରୂପ ଚିତ୍ରଟିଏ ଆଙ୍କି ଦେଉଛି । କମ୍ପ୍ୟୁଟର ଏ ଯୁଗର ଏକ ଅଭିନବ ଅବଦାନ । ଦେଖି ନଥିବା ଜୀବର ମୁଣ୍ଡଟି କେମିତି ହେବ, କାହାଭଳି ହେବ ଦେହର ଆକାର ପ୍ରକାର ସବୁକଥା କମ୍ପୁଟର ମାଧ୍ୟମରେ କଳ୍ପନା କରାଯାଇପାରୁଛି । ସିନେମା 'ଜୁରାସିକ ପାର୍କ'ରେ କମ୍ପୁଟର ବିଜ୍ଞାନୀ ଜର୍ଜ ଲୁକାସଙ୍କର ପରିକଳ୍ପନା ହଜିଲା ଅତୀତକୁ ଜୀବନ୍ତ କରି ଦେଖେଇ ଦେଇ ପାରିଲା ।

ଶିଳ୍ପୀଟିଏ ମାଟିର ପିତୁଳା ଗଢ଼େ । ଖଣ୍ଡ ଖଣ୍ଡ କାଠି ବାନ୍ଧି ପ୍ରଥମେ ଆକାର ନିରୂପଣ କରେ । ତା'ପରେ ନଡ଼ା ବାନ୍ଧେ ଠିକ୍ କଳ୍ପିତ ରୂପଟି ଭଳି ।



ମାଟି ନେସି ନେସି ପ୍ରତିରୂପ ଗଢ଼େ । ତୁଳୀରେ ରଙ୍ଗ ଦିଏ । ଆଖି ଆଗରେ ଜୀବନ୍ତ ହୋଇଉଠେ ରୂପକଳ୍ପଟି ।

ପ୍ରତିମା ନିର୍ଜୀବ, ମୂକ ଓ ଗତିହୀନ । ମାତ୍ର କମ୍ପୁଟର ତାକୁ ଜୀବନ୍ତ ବୋଲି ପ୍ରତ୍ୟୟ ସୃଷ୍ଟି କରି ପାରୁଛି । ରୂପକଳ୍ପଟି ଗତିଶୀଳ ହେଉଛି । କଣ୍ଠରେ ସ୍ୱର ଭାସି ଆସୁଛି । ସବୁ ଘଟିଯାଉଛି ମନିଟରର ସ୍କ୍ରିନ ଉପରେ । ଅନେକ ଆବିଷ୍କାର ହେଲାଣି ଡାଇନୋସର ସଂପର୍କରେ....ତେଣୁ ଆଖି ନ ଦେଖି ଥିଲେ ବି ଦେଖିଲା ଭଳି ଡାଇନୋସରର କଥାମାନ ପ୍ରକାଶ ପାଇ ଚାଲିଛି ।

**ଡାଇନୋସରର ପଦଚିହ୍ନ :** ଦକ୍ଷିଣ କୋରିଆର ଉପକୂଳକୁ କହନ୍ତି 'ସାମ୍‌ଚାମ୍‌ପୋ' (ତିନିହଜାର ସାଗରର ବେଳା) । ଏଇଠି କାଦୁଅ ଭିତରେ ଡାଇନୋସରର ପାଦଚିହ୍ନ ପଥର ହୋଇ





ରହିଯାଇଛି । କୋରିଆ ଲୋକେ ପଦଚିହ୍ନ ଥିବା ଏଇ ଇଲାକାକୁ କହନ୍ତି ''ଗଙ୍ଗ୍‌ୟଙ୍ଗ ବାଲ୍‌ଜାଗୁକ୍'' ୧୯୬୬ ଅଗଷ୍ଟ ୨୪ ତାରିଖରେ ଏଡ଼ୱାର୍ଡ଼ ମ୍ୟାକର୍ଥ ନାମକ ଜଣେ ବୁଲଡୋଜର ଡ୍ରାଇଭର ଆମେରିକାର କାନେକ୍‌ଟିକଟ ରକି ହଲ ଅଞ୍ଚଳରେ ଡାଇନୋସରର ଦୁର୍ଲଭ ପଦଚିହ୍ନ ଦେଖିବାକୁ ପାଇଥିଲେ । ଏହା ପୂର୍ବରୁ ୧୯୩୨ରେ ଆମେରିକାର 'ଉତ୍‌ତା'ସ୍ଥିତ ସଲ୍‌ଟ ଲେକ୍ ମହାନଗରରେ ବିଶାଳକାୟ ବତକମୁହାଁ ହାନ୍‌ଡ୍ରୋସରସ'ର ପଦଚିହ୍ନ ଚିହ୍ନଟ କରାଯାଇଥିଲା । ଏହି ପଦଚିହ୍ନର ଲମ୍ବ ୫୩.୫ ଇଞ୍ଚ ଏବଂ ଚଉଡ଼ା ୩୨ ଇଞ୍ଚ । କେତକ ସ୍ଥାନରେ ଏହି ପଦଚିହ୍ନର ଚଉଡ଼ା ୪୦ ଇଞ୍ଚଯାଏ ରହିଛି । ୧୯୮୩ରେ ସେଇ ଆମେରିକାର ଦକ୍ଷିଣପୂର୍ବ କୋଲୋରାଡ଼ୋସ୍ଥିତ ମୋରିସନ ସ୍ତର ନିକଟରେ ଚାରୋଟି 'ବ୍ରୋଣ୍ଟୋସରସ ଧାଉଁଥିବା ବେଳେ ମାଟି ଉପରେ ଅଙ୍କିତ ପଦଚିହ୍ନ ଦେଖିବାକୁ ମିଳେ । ପ୍ରାୟ ୭୫ ଫୁଟ ଦୂରତାର ଏହି ସବୁ ପଦଚିହ୍ନ ଏଯାବତ୍ ମିଳିଥିବା ପଦଚିହ୍ନର ପଥ ଭିତରେ ସବୁଠୁ ଦୀର୍ଘତମ । ଉତ୍ତର ଆମେରିକା ଓ ଏସିଆର କେତେକ ସ୍ଥାନରେ ଏ ପର୍ଯ୍ୟନ୍ତ ୨୪୦ଟି ଡାଇନୋସରମାନଙ୍କର ପଦଚିହ୍ନ ଚିହ୍ନଟ କରାଯାଇଛି । କୋଲୋରାଡ଼ୋ ବିଶ୍ୱବିଦ୍ୟାଳୟର



ଭୂତତ୍ତ୍ୱବିତ୍ ମାର୍ଟିନ୍ ଲକ୍‌ଲେ ଏହି ପଦଚିହ୍ନକୁ ଯଥେଷ୍ଟ ଗୁରୁତ୍ୱ ଦିଅନ୍ତି । ତାଙ୍କ ମତରେ ଏହିସବୁ ପଦଚିହ୍ନମାନଙ୍କରୁ ଡାଇନୋସରମାନଙ୍କର ଗୋଡ଼ର ମୋଟେଇ, ଧାଇଁବାର ଗତି ଆକାର ଓ ଆଚରଣ ସଂପର୍କରେ କଳ୍ପନା କରିହୁଏ । ମାଟିତଳୁ ମିଳିଥିବା ଗୋଡ଼ ହାଡ଼ର ମୋଟେଇ ଏବଂ ପଦଚିହ୍ନର ଗୋଲେଇ ଆପ୍ୟତତଃ ମିଳିଗଲେ ଡାଇନୋସରଟିକୁ ଚିହ୍ନଟ କରିହୁଏ । ପାଦଚିହ୍ନଟି କେତେବଡ଼ ଗାତ କରିଛି, ତହିଁରୁ ଡାଇନୋସରର ଓଜନ ଅନୁମାନ କରିହେବ । ଯଦି ପଛଗୋଡ଼ର ପାଦଚିହ୍ନ ଆଠଇଞ୍ଚ ଲମ୍ୱ ଓ ସାଢ଼େ ପାଞ୍ଚଇଞ୍ଚ ଚଉଡ଼ା....ଆଗଗୋଡ଼ର ପାଦଚିହ୍ନ ଛଅ ଇଞ୍ଚ ଲମ୍ୱ ଓ ଚାରିଇଞ୍ଚ ଓସାର ଏବଂ ଆଗ ଓ ପଛ ଗୋଡ଼ର ବ୍ୟବଧାନ ଚଉଦ ଇଞ୍ଚ ତେବେ ଲକ୍‌ଲେଙ୍କ ମତରେ ଡାଇନୋସରର ପାଦଠୁ ଅଣ୍ଟାର ଉଚ୍ଚା ତିନିଫୁଟ ହେବ ଓ ସେଇଟି ଏକ ଶିକାରୀ କୁକୁର ଆକୃତିର ହୋଇଥିବ । ଅତଏବ ଏଇଟି ଏକ ଶିଶୁ ଡାଇନୋସର ବୋଲି ସେ ଦୃଢ଼ ଭାବେ କହି ପାରନ୍ତି ।

ଟେକ୍‌ସାସ ନିକଟରେ ମିଳିଥିବା ପଦଚିହ୍ନ ଦେଖିଲେ ମନେହେବ ଯେ ବିଶାଳକାୟ ଗୋଟିଏ ହାତୀପାଦିଆ ବ୍ରୋଣ୍ଟୋସରସ ଧାଉଁଥିଲା ଓ ତାକୁ ଏକ ମାଂସାଶୀ ସିଂହପାଦିଆ ଆଲ୍ଲସରସ କିମ୍ୱା ଟିରାନୋସରସ ରେକ୍ସ ଆକ୍ରମଣ ପାଇଁ ଗୋଡ଼ାଇ ଥିଲା । ଏହି ପାଦଚିହ୍ନମାନଙ୍କର ବୈଜ୍ଞାନିକମାନେ ଡାଇନୋସରମାନଙ୍କର ଗତିର କଳନା କରି ପାରିଛନ୍ତି । ଏକ ମାଂସାଶୀ ଡାଇନୋସର ଘଣ୍ଟାକୁ ୪୦ କିଲୋମିଟର ବେଗରେ ଧାଇଁ ପାରୁଥିଲା ବୋଲି ବିଶ୍ୱାସ କରାଯାଏ । ସବୁଠୁ ଗତିଶୀଳ ଡାଇନୋସର ଅଷ୍ଟ୍ରିଚଭଳି ଘଣ୍ଟାକୁ ୬୫ କିଲୋମିଟର ବେଗରେ ଧାଇଁଯାଇ ପାରୁଥିଲା । ଏହି ବେଗବାନ ଡାଇନୋସରଟି ହେଉଛି ଶହେକିଲୋ ଓଜନର 'ଡ୍ରୋମିସିଓମାଇମସ୍' ।

ପଦଚିହ୍ନ ମିଳିଥିବା ଇଲାକାମାନଙ୍କରେ ଡାଇନୋସରର ଲାଞ୍ଜ ଘୁଷୁରିବାର ଚିହ୍ନ ମିଳି ନାହିଁ । ତେଣୁ ବିଶେଷଜ୍ଞମାନେ କହନ୍ତି ଯେ ଡାଇନୋସର ଧାଇଁବାବେଳେ ଲାଞ୍ଜଟେକି ଧାଉଁଥିଲା ଓ ପୂର୍ବରୁ କୁହାଯାଉଥିଲା ଯେ ଡାଇନୋରସମାନେ ଶୀତଳରକ୍ତ ବିଶଷ୍ଟ ଓ ମାନ୍ଦା ପ୍ରକୃତିର ଜୀବ ଥିଲେ । ଲାଞ୍ଜଘୋଷାରି ଚାଲୁଥିଲେ । ଧାଇଁବା ଥିଲା କଳ୍ପନାତୀତ । ମାତ୍ର ଲକ୍‌ଲେ, ସେମ୍‌ସ ଫାର୍‌ଲୋ ପ୍ରଭୃତି ବିଶେଷଜ୍ଞମାନେ ପଦଚିହ୍ନକୁ ଅନୁଶୀଳନ କରି କହିଲେଣି ଯେ ଡାଇନୋସରଗୁଡ଼ିକ ଉଷ୍ମରକ୍ତର ଜୀବ ଥିଲେ ଓ ଗତିଶୀଳ ଥିଲେ ।

ଆମ ଭାରତବର୍ଷର ଗୁଜୁରାଟର ଖେଦା ଜିଲ୍ଲାରେ ବାଲାସିନର ସହର ପାଖରେ ଡାଇନୋସରର ପଦଚିହ୍ନ ମଧ ମିଳିଛି । ପଞ୍ଚମହଲ ଜିଲ୍ଲାର 'ଦାହୋଦ' ସହରର ମଧ ଏଭଳି ପଦଚ ଲକ୍ଷ୍ୟ କରାଯାଇଛି ।









**ଚର୍ମ ଚିହ୍ନ ଓ କଳ୍ପନା :** ଯେଉଁ ପୃଥିବୀର ମାଟି ପଦଚିହ୍ନକୁ ସାଇତିପାରେ, ସେଇ ମାଟି ସାଇତି ରଖିଛି ଅତିକାୟ ଜୀବମାନଙ୍କ ପିଠି ଉପରର ଚିହ୍ନ...ଚର୍ମର ଚିହ୍ନ । ଅତି ଆଶ୍ଚର୍ଯ୍ୟଜନକ ଭାବେ ଚର୍ମଚିହ୍ନର ଫସିଲ ଅବିକଳ ରହିଯାଇଛି ମାଟିତଳେ । ହାଡ଼କୁ ଓଜନ କରି ଅନୁମାନ କରାଯାଏ ଜୀବଟିର ମାଂସପେଶୀ କିପରି ହୋଇଥିବ ? ହାଡ଼କୁ ଚଳନକ୍ଷମ କରିବା ପାଇଁ କେତେ ପରିମାଣର ମାଂସପେଶୀ ଲୋଡ଼ା.....ତା'ର କଳ୍ପନା କରାଯାଏ । ତାପରେ ସେତକ ମାଂସପେଶୀକୁ ଘୋଡ଼ାଇ ରଖିବା ପାଇଁ ଚମ କେତେମୋଟା ହେବ. ଚମର ଆକୃତି ଓ ଉପରିଭାଗ କିଭଳି ହୋଇଥିବ ସବୁର ପରିକଳ୍ପନା କରେ ବୈଜ୍ଞାନିକ । 'ଉତ୍ତା'ର ଶିଳ୍ପୀ ଷ୍ଟିଫେନ ଚେରକାସ କହନ୍ତି ଡାଇନୋସରର ଚର୍ମ ନରମ କି ମସୃଣ ନଥିଲା । ତା'ର ମୋଟା ଚମ ଆବୁଆବୁଆ ଓ କାତିଆ ଥିଲା । ଆଗରୁ ଧାରଣା ଥିଲା ଯେ ଡାଇନୋସରର ରଙ୍ଗ ମାଟିଆ, ଅଳ୍ପ ଧୂଷରିଆ ଅଥବା ଫିକା ସବୁଜରଙ୍ଗର । ମାତ୍ର ବିଜ୍ଞାନୀମାନେ କହନ୍ତି ଯେ ଡାଇନୋସରର ଦିହର ରଙ୍ଗ ଉଜ୍ଜ୍ୱଳ ଓ ବିବିଧ ଥିଲା । ଆମଯୁଗର ପକ୍ଷୀ ଓ ସରୀସୃପଙ୍କ ଭଳି ସେମାନେ ବିଚିତ୍ର ଥିଲେ । ଶତ୍ରୁ କବଳରୁ ରକ୍ଷା ପାଇବା ପାଇଁ ସେମାନେ ରଙ୍ଗ ବଦଳାଇ ପାରୁଥିଲେ ଅଥବା ପ୍ରାକୃତିକ ପରିବେଶରେ ମିଶିବା ପାଇଁ ସେମାନଙ୍କର ଛଦ୍ମରୂପ ଥିଲା । ମୁଣ୍ଡରେ ଥିବା ଚୂଳ ବା ବେକପାଖରେ ମୋଟାକମ୍ବଳର ରଙ୍ଗ ମାଈ ଡାଇନୋସରକୁ ଆକୃଷ୍ଟ କରିବା ପାଇଁ ମନମୋହକ ଥିଲା । ଏବେ ବି ପ୍ରକୃତିର ଏହି ନିୟମରେ ପୁରୁଷ ଜୀବ ସୁନ୍ଦର ଓ ଆକର୍ଷକ ।

**ଲଣ୍ଡା ଲଣ୍ଡା ଗୋବର :** ଉତ୍ତର ଆମେରିକାର କିଛି ଅଞ୍ଚଳରେ ଡାଇନୋସର ମାନଙ୍କର ଲଣ୍ଡା ଲଣ୍ଡା ଗୋବର ମିଳିଛି । କାଲିଫର୍ଣିଆ ବିଶ୍ୱବିଦ୍ୟାଳୟର ସ୍ନାତକ ଛାତ୍ରୀ କାରେନ୍ ଚିନ୍ ଏହା ଉପରେ ଗବେଷଣା କରୁଛନ୍ତି । ଅଣୁବୀକ୍ଷଣ ଯନ୍ତ୍ରରେ ଏହି ଗୋବରରେ ଥିବା ଉପାଦାନଗୁଡ଼ିକ





ଡାଇନୋସରର ଖାଦ୍ୟ, ହଜମକ୍ରିୟା ଏବଂ ତତ୍କାଳୀନ ତୃଣ ଓ ଗୁଳ୍ମ ସଂପର୍କରେ ଧାରଣା ଦିଏ । ଜୁରାସିକ ଯୁଗରେ ଶାକଭୋଜି ଡାଇାନୋସରମାନେ କ'ଣ ଖାଇ ଏଭଳି ବିରାଟକାୟ ହୋଇପାରିଲେ ଏବଂ କ୍ରେଟାସିୟସ ଯୁଗରେ 'ହାଣ୍ଡ୍ରୋସରସ'ମାନେ କିପରି ବଡ଼ି ବଡ଼ ବଡ଼ ଗୋଠରେ ଚଳପ୍ରଚଳ ହେଉଥିଲେ ? ମାଟିତଳୁ ମିଳିଥିବା ବିଭିନ୍ନ ଡାଇନୋସରମାନଙ୍କ ଗୋବର ହିଁ ଏସବୁ ପ୍ରଶ୍ନର ସମାଧାନ କରିଦେବ ।



ଡାଇନୋସରର ଗୋବର

**ଡାଇନୋସରର ଅଣ୍ଡା :** ଚଢ଼େଇମାନେ ଦଳ ଦଳ ହୋଇ ଅଣ୍ଡା ଦିଅନ୍ତି । ଡାଇନୋସରମାନେ ମଧ୍ୟ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଦଳ ଦଳ ହୋଇ ଅଣ୍ଡା ଦେଉଥିଲେ । କ୍ରେଟାସିଅସ ଯୁଗରେ ଅଣ୍ଡା ଦେଇଥିଲା ଡାଇନୋସର । ଛୁଆ ଫୁଟି ପାରି ନଥିଲା । ମାଟିକୋଳକୁ ଆଦରି ନେଇ ଅଫୁଟା ଅଣ୍ଡା ଫସିଲ ହୋଇ ରହିଗଲା । ସେସବୁ ଅଣ୍ଡା ମାଟିତଳୁ ମିଳୁଛି । ଅଣ୍ଡାଖୋଳ ଅଛି; ଲାଳ ଶୁଖି ମାଟି ହୋଇଯାଇଛି । ଚୀନ ଦେଶର ଦକ୍ଷିଣ ପଶ୍ଚିମ ଅଂଶରେ ୫୦୦୦ ଯାଏ ଏଭଳି ଅଣ୍ଡା ମିଳିଛି । ତିରିଶଟି ଦେଶର ୨୦୦୦ ବିଶେଷଜ୍ଞଙ୍କୁ ଏହି ଅଣ୍ଡାଗୁଡ଼ିକୁ ଏକ ପ୍ରଦର୍ଶନୀରେ ଦେଖାଇ ଦିଆଯାଇଛି । କଇଁଛ ଅଣ୍ଡା ଦେଇ ମାଟିରେ ତାକୁ ପୋତି ପକାଏ, ଠିକ୍ ସେମିତି ଡାଇନୋସର ଅଣ୍ଡାଦେଇ ମାଟିରେ ତାକୁ ପୋତି ସେ ସ୍ଥାନ ଛାଡ଼ି ଚାଲିଯାଉଥିଲା ଅଥବା ନିକଟରେ ରହି ସତର୍କ ଦୃଷ୍ଟି ରଖୁଥିଲା ।



ଡାଇନୋସରର ଅଣ୍ଡା





ଚାଳିଶ ଫୁଟ ଲମ୍ବର ହିପ୍‌ସେଲୋସରସ ପ୍ରାନ୍ସର ଆଇକ୍ସ ପ୍ରଦେଶରେ ଥିବା ଡ୍ୟୁରାନ୍‌ସ ଉପତ୍ୟକାରେ ଦେଖାଯାଉଥିଲା । ୧୯୬୧ ମସିହାରେ ଏହି 'ହିପ୍‌ସେଲୋସରସ'ର ଅଣ୍ଡା ଚିହ୍ନଟ କରାଯାଇଥିଲା । ଏହି ଅଣ୍ଡାର ଲମ୍ବା ଫୁଟେ ଓ ଚଉଡ଼ା ୧୦ ଇଞ୍ଚ । ଅଣ୍ଡା ଭିତରେ ୩.୩ଲିଟର ଲାଳ ରହୁଥିଲା । ଏହା ସବୁଠୁ ବୃହତ୍ତମ ଅଣ୍ଡାଟିଏ ।

ଅଣ୍ଡା ଭିତରେ ଭୃଣାଙ୍କୁର ଥିବା ଏକ ଫସିଲ ମଧ ମିଳିଲାଣି । ଟେରି ମ୍ୟାନିଙ୍ଗ୍ ଦୀର୍ଘ ତିନିମାସ ଧରି ଧାତବ ସ୍ତରକୁ ଧୈର୍ଯ୍ୟର ସହ ଉଖାରି ଉଖାରି ପାଇଛନ୍ତି ଡାଇନୋସରର ଭୃଣାଙ୍କୁରଟିଏ । ଏହା ୭୫ ନିୟୁତ ବର୍ଷତଳେ ଚୀନର ୟୁନାନ ପ୍ରଦେଶରେ ରହୁଥିବା ସେଗ୍ନୋସରସର । ଅର୍ଥର କ୍ରୁ ଇକ୍‌ସାଙ୍କ କହନ୍ତି ଯେ ଏହି ସେଗ୍ନୋସର ଚୀନ ଓ ମଙ୍ଗୋଲିଆରେ କ୍ରେଟାସିଅସ ଯୁଗର ମଧ୍ୟମ ଶେଷାର୍ଦ୍ଧ ବେଳକୁ ଜୀବିତ ଥିଲେ । ଏହି ଡାଇନୋସରଟି ଶାକଭୋଜୀ ଥିଲା । ଭୃଣାଙ୍କୁରର ହାତୁଆ ଆକୃତି ମଙ୍ଗୋଲିଆ ଅଞ୍ଚଳରେ ରହୁଥିବା ଡାଇନୋସରମାନଙ୍କ ଗତି ଓ ପ୍ରକୃତି ସଂପର୍କରେ ସୂଚନା ଦିଏ । ୫୦୦ଟି ଅଣ୍ଡା ଭିତରୁ ଗୋଟିଏ ମାତ୍ର ଅଣ୍ଡାରେ ଏଭଳି ଆକୃତି ଧାରଣ କରିସାରିଥିବା ଡାଇନୋସରର ଭୃଣ ମିଳିଥାଏ । କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର ପ୍ରାଣୀ ବିଭାଗ ମ୍ୟୁଜିୟମରେ ୨୦ଟି ଡାଇନୋସର ଅଣ୍ଡା ଦର୍ଶକମାନଙ୍କ ପାଇଁ ରଖାଯାଇଛି ।

ଆମ ଭାରତବର୍ଷରେ ନର୍ମଦା ଉପତ୍ୟକା ଅଛି । ସେଠାରୁ ଅଣ୍ଡାର ଫସିଲ ମିଳିଛି । ଏହାର ବ୍ୟାସ ୧୮ ସେ.ମି. । ରଙ୍ଗ ଧୂସର । ମଧ୍ୟପ୍ରଦେଶ ଧର ଜିଲ୍ଲାର 'ବାଗ୍' ଗାଆଁରେ କ୍ରେଟାସିୟସ ଯୁଗର ଅଣ୍ଡା-ଫସିଲ ମଧ ମିଳିଛି ।

**ରକ୍ତ ଓ ଜୀବକୋଷ :** ଫସିଲ ଓ ଅମ୍ବର ଭିତରେ ଆବଦ୍ଧ ମଶା ଦେହର ରକ୍ତ ଓ ଜୀବକୋଷର ଅବଶେଷ ମିଳିଛି । ବୈଜ୍ଞାନିକମାନେ ଏଥିରୁ DNA ଓ ପ୍ରୋଟିନ ସଂଗ୍ରହ କରିସାରିଲେଣି । ଡାଇନୋସରର ଗତିଶୀଳତା ଓ ସ୍ଫୂର୍ତ୍ତି ସଂପର୍କରେ ଧାରଣା ଆଜି କରି ହେଉଛି । ଆଗରୁ କୁହାଯାଉଥିଲା ଯେ ଅତିକାୟ ଡାଇନୋସରମାନେ ଶୀତଳରକ୍ତର ପ୍ରାଣୀ ଥିଲେ । ମାତ୍ର ଏବେ ଦୃଢ଼ ଭାବରେ କୁହାଗଲାଣି ଯେ ଏମାନେ ଉଷ୍ଣରକ୍ତର ଜୀବ ଥିଲେ ଏବଂ ଏମାନଙ୍କର ବୁଦ୍ଧି ତୀକ୍ଷ୍ଣ ଥିଲା । ଅଟାୱାଠାରେ ଥିବା କାନାଡ଼ା ମ୍ୟୁଜିୟମର ଡାଇନୋସର ମାନେ ଜୀବିତ ଥିଲେ । ସେମାନଙ୍କର ଦୁଇଗୋଡ଼, ତିନି ଆଙ୍ଗୁଠି ଥିବା ହାତ, ମଣିଷଭଳି ମସ୍ତିଷ୍କ ଓ ତୀକ୍ଷ୍ଣ ଆଖି ଥାଆନ୍ତା । ଛୋଟିଆ ମୁହଁ ଉପରେ ଶିଙ୍ଗଟିଏ ଥାଆନ୍ତା ଓ ଦାନ୍ତସବୁ ଖୁବ୍ ମୁନିଆ ହୋଇଥାଆନ୍ତା । ହୁଏତ ଏମାନେ ବଞ୍ଚିଥିଲେ ଆଜିର ମଣିଷ ସମାଜ ପୃଥିବୀରେ ଏପରି ଉପନିବେଶ କରି ବସି ନଥା'ନ୍ତେ !





**ଅବଶେଷର ଅବୟବ** : ଡାଇନୋସର ଏବେ ଆଉ ନାହିଁ କି ତାକୁ କେହି ଦେଖିନାହିଁ । ମାଟିତଳୁ ମିଳୁଛି ତା'ର ଅବଶେଷ । ସେଇ ଅବଶେଷକୁ ଟୋକିଧରି ଅବୟବର କଳ୍ପନା କରାହୋଇଛି । ଟ୍ରାଇଆସିକରୁ କ୍ରେଟାସିୟସ ଯୁଗ ଯାଏ ବଞ୍ଚିଥିବା ଡାଇନୋସରର ଅବୟବ ବିସ୍ମୟ ସୃଷ୍ଟି କରୁଛି । ଆଶ୍ଚର୍ଯ୍ୟଚକିତ ହେବାକୁ ହେଉଛି । ଏଇ ପୃଥିବୀରେ ଏଭଳି ଅତିକାୟ ଜୀବନ କ'ଣ ସତରେ ଥିଲା ?

ଶିଳ୍ପୀ-ବିଜ୍ଞାନୀ ଓ କମ୍ପୁଟର ଡାଇନୋସରର ଚିତ୍ରକୁ ଆମ ଆଗରେ ଟୋକି ଧରୁଛନ୍ତି । ମଣିଷର ଅବଚେତନକୁ ସେଇ ଅତିକାୟ ଡାଇନୋସର ଭୀତତ୍ରସ୍ତ କରି ଦେଉଛି । ଶିଶୁକିଶୋର କୌତୁହଳରେ ଶିହରୀ ଉଠୁଛନ୍ତି । ତଥାପି ଡାଇନୋସର ସେମାନଙ୍କର ପ୍ରିୟ । ସେଭଳି ଚମତ୍କାରୀ ଜୀବଟିକୁ ନନ୍ଦନକାନନରେ ଦେଖିବାକୁ କାହାର ବା ଇଚ୍ଛା ନ ହେବ ? ମଣିଷ ନାଚେ, କଣ୍ଢେଇ ନାଚେ । କଣ୍ଢେଇନାଚର କୌଶଳ ଖୁବ୍ ଚମତ୍କାର । ଡାଇନୋସର ଜୀଇଉଠିବ କି ନାହିଁ ସେ କଥା ଭବିଷ୍ୟତ କହିବ । ମାତ୍ର ଏବେ କଣ୍ଢେଇ-ଡାଇନୋସରକୁ ଦେଖିବା ପାଇଁ ଆଗ୍ରହ ଅନେକ । ଡାଇନୋସରର ନାଚ ଦେଖିବେ ଆମ କୁନାକୁନି ଓ ତାଙ୍କ ବାପ ମାଆ । ହେଲେ ଜୀବନ୍ତ ଡାଇନୋସରକୁ ଦେଖିଛି କିଏ? ଚାନ୍ଦିପୁର ବେଳାଭୂଇଁରେ ଏକଥାର ଉତ୍ତର ଅଛି । କାମ୍ବ୍ରିଆନ











ଯୁଗ ଆରମ୍ଭ ହୋଇଥିଲା ୫୭୦ ନିୟୁତ ବର୍ଷ ତଳେ । ସେ ଯୁଗରେ ଟ୍ରାଇଲୋବାଇଟ ନାମରେ ଜୀବଟିଏ ପୃଥିବୀକୁ ଆସିଥିଲା । ବିବର୍ତ୍ତନ ଲାଗିରହିଛି । ସେଇ ଟ୍ରାଇଲୋବାଇଟର ବିବର୍ତ୍ତିତ ରୂପ ଆଶ୍ୱାଖୁରାକୃତି କଙ୍କଡ଼ା । ଚାନ୍ଦିପୁର ବେଳାଭୂଇଁରେ କଙ୍କଡ଼ା ଏବେ ବି ବଞ୍ଚିଛି । ସେ ଜୀବନ୍ତ ଫସିଲଟିଏ । ସମସ୍ତେ ତାକୁ ଜାଣନ୍ତି- ରାମଲକ୍ଷଣିଆ, ସମୁଦ୍ରବିଛା, ରାମଲେଖନୀ ଏମିତି ଅନେକ ନାଆଁରେ । ଡାଇନୋସରକୁ ଦେଖିଥିଲେ ଦେଖିଥିବ ସେଇ ରାମଲକ୍ଷଣିଆ । କଥା କହି ପାରୁଥିଲେ ସେ ହୁଏତ କହି ଥାଆନ୍ତା ଆଉକିଛି । ଡାଇନୋସରର ରୂପକଳ୍ପ ବଦଳିଯାଆନ୍ତା ।

ଆମ ପାଖରେ ଯନ୍ତ୍ରଟିଏ ନାହିଁ, କି କୌଶଳଟିଏ ନାହିଁ.. ତା'ର ସେଇ ସ୍ମୃତିରୁ ସେଦିନର ଚିତ୍ରପଟଗୁଡ଼ିକୁ ବାହାର କରି ଆଣିବା ପାଇଁ ।







# ଡାଇନୋସରର ଭୂତ: 'ନେସି'

ଭୂତ ଥାଉ କି ନ ଥାଉ... ଲୋକେ କହନ୍ତି ଭୂତ ଅଛି । ଆଈମା' ନାତୁଣୀକୁ କହେ ଭୂତ ଗପ । ଭୂତ ସବୁଠି ଚର୍ଚ୍ଚାର ବିଷୟ ।

ବ୍ରିଟେନରେ ଅଛି ମଧୁର ପାଣିର ଗୋଟିଏ ହ୍ରଦ । ସେଇ ହ୍ରଦର ନାଆଁ 'ଲେକ୍ ନେସ୍' । ଚଉଦଶହ ବର୍ଷ ହେଲା ଲୋକେ କହି ଆସୁଛନ୍ତି, ଯେ ସେଇ ହ୍ରଦରେ 'ନେସି' ଅଛି । କଳା ଓ ଧୂସରିଆ । ନବେ ଫୁଟର 'ନେସି' କୁଆଡ଼େ ପାଣିଜନ୍ତୁଟିଏ । ତା'ର ଲମ୍ବା ଲାଞ୍ଜ ଓ ସରୁ ବେକ ଅଛି । ଆହୁଲାଭଳି ଚାରୋଟି ପକ୍ଷରେ ସେ ପହଁରିପାରେ । ବେଳେବେଳେ ଲମ୍ବା ବେକ କାଢ଼ି ପାଣି ଉପରକୁ ମୁଣ୍ଡ ଟେକେ । ମୁଣ୍ଡଟି ଘୋଡ଼ା ମୁଣ୍ଡଭଳି । ଉପରକୁ ହଠାତ୍ ଉଠି ଆସି ପୁଣି ସେ ଗଭୀର ଜଳ ଭିତରେ ଲୁଚିଯାଏ ।

ହଲ୍ଲା ପଡ଼େ... 'ନେସି' ମୁଣ୍ଡ କାଢ଼ିଥିଲା... ଗଣ୍ଡ ଭିତରେ ପୁଣି ଲୁଚିଗଲା ।

'ନେସି'କୁ କେହି କେହି କହନ୍ତି ଯେ ସେ ଏକ 'ପ୍ଲେସିଓସର' । ଡାଇନୋସର ଯୁଗରେ ସେ ସମୁଦ୍ର ଭିତରେ ରହୁଥିଲା । 'ଲେକ୍ ନେସ'ର ହ୍ରଦ ଭିତରେ ଗୋଟିଏ 'ପ୍ଲେସିଓସର' କେମିତି ରହିଯାଇଛି । ଲେକ୍‌ନେସର ସେ ରାକ୍ଷସ ବା ଭୂତ । ତା ସମ୍ପର୍କରେ ତିନୋଟି ବଡ଼ ବହି ଲେଖାଯାଇଛି । ସେଗୁଡ଼ିକ ହେଲା ୧୯୫୭ରେ ପ୍ରକାଶିତ ଓ ହ୍ୱାଇଟଙ୍କ ରଚିତ 'କାହାଣୀଠୁ ବଳି' ୧୯୭୫ରେ ନିକୋଲାସ ୱିଟେଲଙ୍କ ରଚିତ 'ଲେକ୍‌ନେସର କାହାଣୀ' ଏବଂ ୧୯୭୬ରେ ରଏ ମାକ୍‌ଅଲଙ୍କ ଲେଖା 'ଲେକ୍‌ନେସର ରାକ୍ଷସ' ।

ପିଟର ସ୍କଟ ଏଇ ନେସିର ଏକ ବୈଜ୍ଞାନିକ ନାଆଁ ଦେଇଛନ୍ତି । ତାହା ହେଲା— 'ନେସିରେଟାସ ରୋମ୍ବୋଟେରିକ୍ସ' । ଡଃ କ୍ରିଷ୍ଟୋଫର ମାକ୍‌ଗୋୱାନଙ୍କ ମତରେ ନେସି ଯଦିବା ଏଇ ହ୍ରଦରେ ଥାଏ, ସେ କେବେହେଲେ 'ପ୍ଲେସିଓସର' ବା ଏଲାସ୍‌ମୋସରସ ହୋଇ ନ ପାରେ । କାରଣ ଲେକ୍‌ନେସର ଥଣ୍ଡା ଜଳରେ ଏଭଳି ଏକ ପ୍ରାଗ୍ ଐତିହାସିକ ଅତିକାୟ ଜୀବ ଜୀବିତ ରହିବା ସମ୍ଭବ ନୁହେଁ । ତେଣୁ 'ନେସି' ପ୍ରକୃତରେ ଡାଇନୋସରର ଏକ ପାଣିଭୂତ । ଲୋକଙ୍କ ଅବଚେତନରେ ଡାଇନୋସର ପ୍ରତି ଥିବା କୌତୂହଳର ଗୋଟାଏ ଗୁଜବ ।







# ଆଉ କିଛି ଗୁଜବ: କିଛି ସମ୍ବାଦ

**ଲଣ୍ଡନ ଟାଇମ୍‌ସ: ନଭେମ୍ବର ୧୭, ୧୯୧୯**

## କଙ୍ଗୋରେ 'କନ୍‌ଟୁସରସର'ର ସନ୍ଧାନ

ବେଲଜିଆନ କଙ୍ଗୋ: ନିର୍ମାଣାଧୀନ ଏକ ରେଳପଥର ପରିଦର୍ଶନ କରୁଥିବାବେଳେ ଜଣେ ଠିକାଦାର ଏକ ଅଭୂତପୂର୍ବ ଅତିକାୟ ଭୟଙ୍କର ଜୀବର ଆକ୍ରମଣରୁ ଅଳ୍ପକେ ରକ୍ଷା ପାଇଯାଇଛନ୍ତି । ଆତ୍ମରକ୍ଷା ପାଇଁ ସେ ଗୁଳିଚାଳନା କରିଥିଲେ ମଧ୍ୟ ଏହି ଅତିକାୟ ଡାଇନୋସରଟି ତାଙ୍କ ଆଡ଼କୁ ମାଡ଼ି ଆସିଥିଲା । ସେ ନିଜକୁ ରକ୍ଷା କରିବାକୁ ଜୀବନ ବିକଳରେ ଧାଇଁଥିଲେ । ଯେତେବେଳେ ସେ ଅନୁଭବ କଲେ ଯେ ତାଙ୍କ ପଛରେ ସେଇ ଜନ୍ତୁଟି ଆଉ ପଶ୍ଚାଦ୍‌ଧାବନ କରୁନାହିଁ; ସେତେବେଳେ ସେ ପଛକୁ ଚାହିଁ ଦେଖିଲେ ଯେ ଜଙ୍ଗଲ ଭିତରକୁ ସେ ଜୀବଟି ଧପାଲି ଧପାଲି ଫେରି ଯାଉଛି । ସେ କହନ୍ତି ଯେ ଏହି ଜୀବର ଲମ୍ବ ଥିଲା ୨୪ ଫୁଟ, ଗଣ୍ଡାଭଳି ଥୋମଣି ଉପରେ ଏକ ଶିଙ୍ଗ ଥିଲା ଓ ହାତୀଦାନ୍ତ ଭଳି ଆଉ ଦୁଇଟି ଶିଙ୍ଗ ମଧ୍ୟ ଥିଲା । ଆଗଗୋଡ଼ ଘୋଡ଼ାଭଳି ମନେ ହେଉଥିଲା ଓ ପଛର ଖୁରାଟି ଦୁଇଫେଳିଆ । କାନ୍ଧରେ କାତିକାତିଆ କୁଜଟିଏ ଥିଲା । ଅନୁମାନ କରାଯାଏ ଯେ ଏହି ପ୍ରାଗ୍ ଐତିହାସିକ ଜୀବଟି 'କନ୍‌ଟୁସରସ' ଥିଲା ।

(ୱାସିଂଟନସ୍ଥିତ ସ୍ମିଥସ ନିଆନ୍ ଇନ୍‌ଷ୍ଟିଚ୍ୟୁଟରେ ଜଣେ ସଭ୍ୟ ଏହି ସମ୍ବାଦକୁ ମିଥ୍ୟା ଓ ମନଗଢ଼ା ବୋଲି ପ୍ରତିବାଦ କରିଥିଲେ । ସମ୍ବାଦର ବର୍ଣ୍ଣନାନୁଯାୟୀ ଦେଖା ଯାଇଥିବା ଜୀବଟି 'ତ୍ରିଶିଙ୍ଗା' ଡାଇନୋସର ଭଳି ଅନୁମିତ ହେଲେ ହେଁ ଅନ୍ୟାନ୍ୟ ବର୍ଣ୍ଣନା କପୋଳକଳ୍ପିତ ବୋଲି ପ୍ରମାଣିତ ହୋଇଥିଲା ।)

**ରୋଡ଼ିସିଆନ ହେରାଲ୍‌ଡ-୧୯୩୨**

## ଗୋଟିଏ ନୂଆ ଡାଇନୋସର 'ଚେପେକ୍‌ଉଇ' !!

ଦକ୍ଷିଣ ଆଫ୍ରିକା: ତରୁଣ ପଶୁସନ୍ଧାନକାରୀ ମିଃ ଏଫ୍. ଗ୍ରୋବ୍‌ଲର କହନ୍ତି ଯେ କାଉରେ, ଆଙ୍ଗୋଲା ଏବଂ ଜାମ୍ବିଆର ତୃଣଭୂମି ଅଞ୍ଚଳରେ ଗୋଟିଏ ଜାତିର ଡାଇନୋସର ରହନ୍ତି । ସ୍ଥାନୀୟ ଅଧିବାସୀମାନେ ଏହି ଜୀବକୁ କହନ୍ତି । 'ଚେପେକ୍‌ଉଇ' । କେନ୍ଦ୍ର ଆଫ୍ରିକାର ଆଦିବାସୀ ମନେ କରନ୍ତି ଯେ ଏହି ଜୀବଟି ଏକ 'ଜଳସିଂହ' । ଦେଖିବାକୁ ବିଶାଳ ଗୋଧି (ଇଗୁଆନା) ଭଳି । ଏହାର ଓଜନ ଚାରି ଟନ୍ ଓ ତହିଁରୁ ଅଧିକ । ଗୋଟିଏ ଜଳହସ୍ତୀ ପିଠି ଉପରେ ଝାମ୍ପି ପଡ଼ି ଆକ୍ରମଣ କରୁଥିବାବେଳେ ଗ୍ରୋବ୍‌ଲର ଏହି ଭୟଙ୍କର ଜୀବର ଫଟୋ ଉଠାଇଛନ୍ତି ।

(ସ୍ୱିଡେନବାସୀ ଜେ.ସି. ଜୋହାନ୍‌ସନ ଏହି ସମ୍ବାଦକୁ ଖଣ୍ଡନ କରିଥିଲେ । ତାଙ୍କ ମତରେ ଗୋଟିଏ ଡ୍ରାଗନ (ଅତିକାୟ ଗୋଧି) ମୃତ ଏକ ଜଳହସ୍ତୀ ଉପରେ ବସି ଶବ ଖାଉଥିବା ଘଟଣାକୁ ଏ ସମ୍ବାଦରେ ଅତିରଞ୍ଜିତ କରାଯାଇଛି)

**ସମାଜ: ଏପ୍ରିଲ ୨୬, ୧୯୯୫**

## ଡାଇନୋସର ଆକୃତିର ପ୍ରାଣୀ ଉଦ୍ଧାର

ମେଦିନାପୁର, ତା ୨୬ । ୪ (ୟୁ.ଏନ୍) ଶିଶୁ ଡାଇନୋସର ପରି ଦେଖାଯାଉଥିବା ଏକ କ୍ଷୁଦ୍ର ଜଳଚର ଜୀବକୁ ଗତକାଲି ମତ୍ସ୍ୟଜୀବୀମାନେ ଦିଘା ଉପକୂଳବର୍ତ୍ତୀ ସମୁଦ୍ରରୁ ଧରିଛନ୍ତି ବୋଲି ଏସ୍.ଡି.ଓ. ଶ୍ରୀ କାର୍ତ୍ତିକ ମଣ୍ଡଳ ପ୍ରକାଶ କରିଛନ୍ତି ।

ଏହି ଜୀବର ଆକୃତି ଡାଇନୋସର ଭଳି ହୋଇଛି ଓ ଏହାର ଓଜନ ପ୍ରାୟ ୧୫ କିଲୋ ଏବଂ ଲମ୍ବା ୪ ଫୁଟ । ଏହାର ପିଠିରେ ବଡ଼ ବଡ଼ କାତି ରହିଛି । ଏହି ପ୍ରାଣୀକୁ ସଂରକ୍ଷିତ କରି ରଖାଯାଇଛି । ଏ ବିଷୟରେ କଲିକତାର ଜୁଲୋଜିକାଲ ସର୍ଭେ ଅଫ୍ ଇଣ୍ଡିଆ କର୍ମକର୍ତ୍ତାଙ୍କୁ ଖବର ଦିଆଯାଇଛି ବୋଲି ଜିଲ୍ଲାପାଳ ହେମ ପାଣ୍ଡେ ପ୍ରକାଶ କରିଛନ୍ତି ।

(ଏହି ସମ୍ବାଦର ଖଣ୍ଡନ କରାଯାଇଥିଲା କେବଳ 'ପ୍ରଜାତନ୍ତ୍ର' ଓ 'The Eastern Times' ରେ । ପ୍ରକୃତରେ ଏକ ପାଙ୍ଗୋଲିନକୁ ଦେଖି ଡାଇନୋସରର ଭ୍ରମ ସୃଷ୍ଟି ହୋଇଥିଲା)



ପାଲିଓ ଜୋଇକ୍
ମେସୋଜୋଇକ (୧୨୦ ନିୟୁତ ବର୍ଷ)
ସିନୋଜୋଇକ ୬୦ ନିୟୁତ ବର୍ଷ
ପରମିଆନ
ଟ୍ରାଇଆସିକ
ଜୁରାସିକ
କ୍ରେଟାସିଅସ
ଟରସିଆରି
୨୭୦
୨୨୫
୧୮୦
୧୩୫
୭୦
ମନୋନିକସ
ଏସିଆ - ୧ ମିଟର
ଭେଲୋସିରାପ୍ଟର
ଏସିଆ - ୨ ମିଟର
ଓଭିରାପ୍ଟର
ଏସିଆ - ୧.୮ ମିଟର
ଆର୍କିଓପ୍ଟେରିକ୍ସ
୩୫ ସେ.ମି. ଲମ୍ବ
ଏଲୁସରସ
୧୧ ମିଟର ଲମ୍ବ
ଗରଗୋସରସ
ଟିରାନୋସରସ ରେକ୍ସ
ଉତ୍ତର ଆମେରିକା
୧୪ ମିଟର
ଅରିଣ୍ଡୋମାଇମସ
ଉତ୍ତର ଆମେରିକା ଓ ଏସିଆ - ୪ ମିଟର
ଡିଲୋଫୋସରସ
ଉତ୍ତର ଆମେରିକା
୬ ମିଟର ଲମ୍ବ
ସୃପକଟୀ
ଆପାଟୋସରସ
(ବ୍ରନ୍ ଟୁ ସରସ)
୨୧ ମିଟର
ସେଟିଓସରସ
ୟୁରୋପ - ୮ ମିଟର ଲମ୍ବ
ଷ୍ଟେଗୋସରସ/ଡ୍ରାବିଡୋସରସ
ଉତ୍ତର ଆମେରିକା / ଭାରତ - ୯ ମିଟର
ଲେସୋଥୋରସ (୧ ମିଟର)
ସାଥୁଆ ଡାଇନୋସର
ସରରୋପେଲଟା
ବିହଙ୍ଗକଟୀ
ଇଉଲୋସେଫାଲସ
କାମ୍ପଟୋସରସ
ଉତ୍ତର ଆମେରିକା - ୪.୫ ମିଟର
ବିହଙ୍ଗପଦ
ଇଗୁଆନୋଡନ
ହାଡ୍ରେସରସ
ଟ୍ରାକୋଡନ
ପ୍ରୋସେରେଟପସ୍
ଟ୍ରାଇସେରେ-ଟ-ଟପସ
ଶିଙ୍ଗ ମୁଣ୍ଡା
ଆଙ୍କିଲୋସରସ
ହୋମାଲୋସେଫାଲେ



ଆଜିଠୁ
୨୩୦ ନିୟୁତ ବର୍ଷ ତଳେ
ପୃଥିବୀରେ ଡାଇନୋସରମାନେ ଥିଲେ । ୨୩୦
ନିୟୁତ ବର୍ଷଠୁ ୬୫ନିୟୁତ ବର୍ଷଯାଏ ଅର୍ଥାତ୍ ୧୬୫ ନିୟୁତ ବର୍ଷ
ଥିଲା ଏମାନଙ୍କର ଆକୃତି ସମୟ । ସେ ଯୁଗରେ ମଣିଷର କେହି
ପୂର୍ବପୁରୁଷ ବି ଜନ୍ମି ନଥିଲେ । ଗୋବି ମରୁଭୂମି, ଆର୍ଜେଣ୍ଟିନା, ଆଣ୍ଡସ୍,
ଲାଓସ ଏବଂ ଆଇଲାଣ୍ଡ ଅଞ୍ଚଳ ମୁଖ୍ୟତଃ ଡାଇନୋସରମାନଙ୍କର ଚରାଭୂଇଁ
ଥିଲା । ସେସବୁ ଅଞ୍ଚଳର ମାଟିତଳୁ ମିଳୁଛି ଡାଇନୋସର ମାନଙ୍କର କଙ୍କାଳ,
ଅଣ୍ଡା, ପଦଚିହ୍ନ, ଗୋବର, ଚର୍ମଚିହ୍ନ, ଦାନ୍ତ ଓ ମଶା ଦେହରେ ସୁରକ୍ଷିତ ରକ୍ତ ।
ସେଇ ଜୀବାଶ୍ମମାନଙ୍କୁ ଦେଖି ଦେଖି ବୈଜ୍ଞାନିକମାନେ କହୁଛନ୍ତି ଡାଇନୋସରର
କଥା । ସାରା ପୃଥିବୀରେ ପ୍ରାୟ ୧୦୦ ଜଣ ବୈଜ୍ଞାନିକ ଡାଇନୋସରର ଜୀବାଶ୍ମ
ସଂଗ୍ରହରେ ବ୍ୟସ୍ତ । ବର୍ଷକୁ ଖର୍ଚ୍ଚ ହେଉଛି ଏକ ନିୟୁତ ଡଲାର ଅର୍ଥାତ୍ ୩ କୋଟି
୧୨ ଲକ୍ଷ ଟଙ୍କା । ପ୍ରତି ସପ୍ତାହକ ଅନ୍ତରରେ ପ୍ରାୟ ଗୋଟିଏ ନୂଆ ଡାଇନୋସର
ସଂପର୍କରେ ତଥ୍ୟ ମିଳିଯାଇ ପାରୁଛି । ଏଯାବତ୍ ୩୫୦ ଜାତିର ଡାଇନୋସରଙ୍କ
ସଂପର୍କରେ ତଥ୍ୟ ଜଣାପଡ଼ିଲାଣି । ଅତୀତର ଅବଶେଷରୁ ଡାଇନୋସରର
ଯେତେ ସବୁ କାହାଣୀ; ସାରା ପୃଥିବୀରେ, ସବୁ ଶିଶୁଙ୍କୁ ଆନନ୍ଦ ଦେଉଛି ।
ଡାଇନୋସରର କଥା ତେଣୁ ସବୁଠୁ ଆଜି ମନଲୋଭା :
ଶିଶୁପ୍ରିୟ କାହାଣୀ ।





# ବ୍ରେକ୍-ଇଉ-ସରସ

## (ସୁବାହୁ ଡାଇନୋସର)

ତାଳପତ୍ର ଖାଇ ହାତୀ ଝୁଲେ ନସର ପସର । ତାଳପତ୍ର ଖାଉଥିଲା ବ୍ରେକ୍-ଇଉ-ସରସ । ଦେବଦାରୁ, କ୍ରକଚ ଓ ପାଇନର ଗହନ ଜଙ୍ଗଲ ସେ ଯୁଗରେ । ସେ ସମୟ ଜୁରାସିକ ଯୁଗ... । ବିଶାଳକାୟ 'ବ୍ରେକ୍-ଇଉ-ସରସ'ର ଥାକୁଲା ଥାକୁଲା ଦିହକୁ ଟେକି ରଖିଥାଏ ଶାଳଗଛ ଭଳି ଚାରିଟା ଶକ୍ତ ଗୋଡ଼ । କୁଣ୍ଢ ପାଇବ ନାହିଁ ତା' ଗୋଡ଼କୁ । ଆଗଗୋଡ଼ ଦି'ଟା ପଛଗୋଡ଼ଠୁ ବଡ଼ ଓ ସଳଖ । ବେକଟା ଗୋଟାଏ ମୋଟା ଅଜଗର ଭଳି ଲମ୍ବିଥାଏ ଉପରକୁ । ସେଇ ବେକ ଉପରେ ଛୋଟିଆ ମୁଣ୍ଡଟିଏ । ମୁଣ୍ଡଟେକି ଠିଆ ହେଲାବେଳେ ମନେହେବ ଏବର ଜିରାଫଟା କି ଆଉ ! ଜିରାଫର ବେକ ୮ ଫୁଟ । ଆମ ଦେଖନ୍ତରେ ସବୁଠୁ ଲମ୍ବା ବେକ । ବ୍ରେକ୍-ଇଉ-ସରସର ବେକ ତା'ଠୁ ଆହୁରି ଲମ୍ବା– ୨୮ଫୁଟ । ଏଡ଼େବଡ଼ ବେକଟାକୁ ଠେସି ରଖେ ତା'ର ସେଇ ବିଶାଳ ଆଗଗୋଡ଼ ଦି'ଟା ।



ଗ୍ରୀକ୍ ଭାଷାରେ 'ବ୍ରେକ୍-ଇଉ-ସରସ'ର ଅର୍ଥ ହେଲା 'ବାହୁଥିବା ଗୋଧି' । ଆଗଗୋଡ଼ ପଶୁର ବାହୁ । ବଳିଷ୍ଠ ବାହୁ ଥିବାରୁ ଏଇ ଅତିକାୟ ବ୍ରେକ୍-ଇଉ-ସରସକୁ ଆମେ ନାଆଁ ଦେବା ''ସୁବାହୁ'' ବା 'ସୁବାହୁ ଗୋଧି'' । ପାଣି ଭିତରେ ବୁଡ଼ି ବୁଡ଼ି ସେ ଜଳଜ ଉଭିଦ ଖାଏ । ବେଳେ ବେଳେ ମୁଣ୍ଡ ଟେକେ....ପାଣି ଚହଲିଯାଏ । ସାପଟାଏ ମୁହଁ କାଢ଼ିଲା ଭଳି ଦିଶେ । ସବୁ ପଶୁଙ୍କର ନାକ, ମୁହଁ ଉପର ଥୋମଣି ପାଖରେ ଥାଏ । ବ୍ରେକ୍-ଇଉ-ସରସର ନାକ ଥିଲା ତା'ର ତାଳୁ ଉପରେ । ହେଡ଼ଲାଇଟ ବାନ୍ଧିଲେ ଯେମିତି ଦେଖାଯାଏ, ନାକପୁଡ଼ା ଦୁଇଟା ତା' ତାଳୁ ଉପରେ ସେଇମିତି ଦେଖାଯାଉଥିଲା ।

ଅନେକ ବ୍ରେକ୍-ଉଇ- ସରଅସର କଙ୍କାଳ ମିଳିଛି ମାଟିତଳୁ । ଜର୍ମାନ ଦେଶରେ ହମବୋଲ୍ଦ ବିଶ୍ୱବିଦ୍ୟାଳୟ । ସେଠି ପ୍ରାକୃତିକ ଐତିହ୍ୟର ଯାଦୁଘରଟିଏ ଅଛି । ସେଇ ଯାଦୁଘରେ ଯେଉଁ 'ବ୍ରେକ୍-ଇଉ-ସରସ'ର କଙ୍କାଳ ଅଛି ତା'ର ଲମ୍ବ ୭୫ ଫୁଟ, ଉଚ୍ଚତା ଚାଳିଶ ଫୁଟ । ୧୯୦୯ ଓ ୧୯୦୨ ମସିହାରେ ଶ୍ରୀଯୁକ୍ତ ହରମାନ ଜେଗର ଆଫ୍ରିକାରୁ ଆଣିଥିଲେ ଦୁଇଟି ବିଶାଳକାୟ କଙ୍କାଳ । ତାହା ଏବେ ବି ସେଇଠାରେ ଅଛି । ସେ ଦୁଇଟି 'ବ୍ରେକ୍-ଇଉ-ସରସ'ର କଙ୍କାଳ ।

ଜୁରାସିକ ଯୁଗରେ ଗଛରେ ଫୁଲ ଫୁଟୁ ନଥିଲା । ଦହ, ହ୍ରଦ ଓ ଜଳାଶୟରେ ଅକାତକାତ ପାଣି । ଗଛ ସବୁ କାହିଁ କାହିଁ ଡେଙ୍ଗା । ସେସବୁ ଗଛର ପତ୍ର ମୋଟା ଓ ଟାଆଁସା । ପାଣି ତଳେ ନରମ, ସୁଆଦିଆ ଶିଉଳି, ଜଳଜ ଉଭିଦ ଓ ପାଣିଘାସ । ମାଟି ଉପରେ ଥିଲା ଛୁଞ୍ଚ ଭଳିଆ । ପତ୍ର... ସବୁଜ ଡାଳକୁ ସେ ଟାଣି ଖାଉଥିଲା । ପାଣି ତଳ ଶିଉଳି ଓ ପାଣିଘାସ ବ୍ରେକ୍-ଇଉ-ସରସର ଅତିପ୍ରିୟ ଖାଦ୍ୟ । ସବୁଠୁ ବଡ଼ ଓ ଓଜନଦାର ଜୀବ ଏଇ 'ବ୍ରେକ୍-ଇଉ ସରସ' । ୭୭ ଟନ୍‌ରୁ ୮୫ ଟନ୍ ଯାଏ ତା'ର ଓଜନ । ଦଶଟା ହାତୀଠୁ ବଳି ବି ସେ ବଡ଼ । ବେକ ଲମ୍ବେଇଲେ ଲମ୍ବିଯିବ ତିନିମହଲା କୋଠାଠୁ ଆହୁରି ଉପରକୁ । ଚାଲିଲା ବେଳେ ମାଟି ଦୁଲୁକି ଉଠୁଥିଲା । ଥିରି ଥିରି ଚାଲି । ଏଡ଼େ ଏଡ଼େ ଦେହଟାକୁ ନେଇ ସେ କ'ଣ ଦଉଡ଼ି ପାରୁଥିବ ?



ଦଉଡୁଥିଲେ ତ ଭୂମିକମ୍ପ ହେଉଥିବ......ମାଟି ଥରି ଉଠୁଥିବ !

ଯେମିତି ଦିହ ତା'ର ସେମିତି ବି ପେଟ । ହାଉଁ ହାଉଁ ହୋଇ ଚରିଯାଉଥିବ ଜଙ୍ଗଲ । ପେଟରେ ଚରା ଥିଲେ ଦିନାକେତେ କିଛି ନ ଖାଇ ବି ରହିଯାଉଥିବ । ବୈଜ୍ଞାନିକମାନେ କହନ୍ତି ସେ ସ୍ଥଳଭାଗରେ ନିର୍ଭୟରେ ବୁଲି ପାରୁ ନଥିଲା କି ପାଣିରେ ପହଁରି ପାରୁ ନଥିଲା । ଡର ଥିଲା 'ଏଲୁସରସ'କୁ...। ମାଂସାଶୀ ଏଲୁସରସ ତାକୁ ଶିକାର କରିବାକୁ ଛକିଥାଏ । ଏଲୁସରସ ଆସୁଛି ଜାଣିଲେ ପାଣି ଭିତରକୁ ସେ ଧସେଇ ପଶିଯାଏ । ପାଣି ସେତେବେଳେ ଫାଟି ଦି'ଭାଗ ହୋଇଯାଉଥିଲା ।

## ଆସ ଗଣିବା

### ୨୩୦ ନିୟୁତ

କେଡ଼େ ସହଜ ଲାଗେ କହିବାକୁ ''ଏତେ ନିୟୁତ ବର୍ଷ ଏତେ କୋଟି ବର୍ଷ ।'' ପିଲାଟିଏ ଯଦି ଗଣିବ...କେତେ ସମୟ ଲାଗିବ ତାକୁ ସେତିକି ସଂଖ୍ୟା ଗଣିବାକୁ ? ସେକେଣ୍ଡକୁ ଯଦି ସେ ଦୁଇଟି ସଂଖ୍ୟା ଗଣେ, ଦିନକୁ ଆଠଘଣ୍ଟା ଓ ମାସକୁ ୨୫ ଦିନଯାଏ ଅନବରତ ଗଣେ, ତେବେ ଗୋଟିଏ ନିୟୁତ ସଂଖ୍ୟା ଗଣିବାକୁ ଜଣେ ପିଲାକୁ ଚାରସପ୍ତାହ ୨ ଦିନ ଅର୍ଥାତ୍ ମାସେ ଲାଗିଯିବ । ୧୦୦ ନିୟୁତ ସଂଖ୍ୟା ଗଣୁଥିବା ଗୋଟିଏ ୧୦ ବର୍ଷର ପିଲା ୧୭ ବର୍ଷର କିଶୋରଟିଏ ହୋଇଯାଇଥିବ । ଯେତିକି ବର୍ଷ ତଳେ ଡାଇନୋସର ଥିଲେ ସେତିକି ସଂଖ୍ୟା ଅର୍ଥାତ୍ ୨୩୦ ନିୟୁତ ଗଣିସାରିଲାବେଳକୁ ୧୦ବର୍ଷର ପିଲାଟିଏ ୨୬ ବର୍ଷର ଯୁବକ ହୋଇଯାଇଥିବ ।





ପାଟିସାରା ତା'ର ଚକା ଚକା ଦାନ୍ତ; ଚାମଚ ପରି ଖାଲୁଆ । ଛୁଞ୍ଚି ଭଳି କୋନିଫରର ଟାଆଁସା ପତ୍ରକୁ ଟାଣି ଖାଇବାରେ ଏହି ଦାନ୍ତ ସବୁ ସକ୍ଷମ ଥିଲା । ମାତ୍ର କର୍କଶ, ମୋଟା ପତ୍ର ଓ ଡାଳକୁ ଚୋବେଇ ସେ ପିଠୋଉ କରିପାରୁ ନଥିଲା।ଅଧାଚୋବା ଉଦ୍ଭିଦ ଘାସ ପତ୍ର ତଣ୍ଟି ପାଖରେ ଥିବା ଗୋଟିଏ ମୁଣାରେ ରହୁଥିଲା । ଏହି ମୁଣାଟି ଥିଲା ପେଶୀମୟ ଅନ୍ୟ ଏକ ପାକାଶୟ ।

ଖାଦ୍ୟ ଖାଉଥିବା ବେଳେ ବ୍ରେକ୍-ଇଉ-ସରସ କିଛି କିଛି ପଥର ଓ ଗୋଡ଼ି ଗିଳି ପକାଉଥିଲା । ପେଶୀମୟ ସେହି ପାକାଶୟ ଭିତରେ ପଥର ସାଥିରେ ଚୁରି ହୋଇ ପିଠୋଉ ହୋଇଯାଉଥିଲା ଅଧାଚୋବା ଖାଦ୍ୟ । ସବୁଜ ପିଠୋଉ ଯାଇ ପାକସ୍ଥଳୀରେ ହଜମ ହେଉଥିଲା । ବଡ଼ ବଡ଼ ପଥର ଓ ଗୋଡ଼ି ଗିଳୁଥିବାରୁ ତାହା ହିଁ ତା'ର କାଳ ହେଲା ବୋଲି କେତେକ ବୈଜ୍ଞାନିକ ବିଶ୍ୱାସ କରନ୍ତି । ଏହି ପଥରକୁ କୁହାଯାଉଛି 'ଗ୍ୟାଷ୍ଟ୍ରୋଲିଥ' । ଅସାବଧାନତା ହେତୁ ଏହି ଗ୍ୟାଷ୍ଟୋଲିଥ କଣ୍ଠନଳୀକୁ ରୁଦ୍ଧ କରି ଦେଉଥିବ ଓ ବ୍ରେକ୍-ଇଉ-ସରସର ଅକାଳ ମୃତ୍ୟୁ ଘଟୁଥିବ ।



# ସୁବାହୁର ଏ କଙ୍କାଳଟି କେଉଁଠୁ ମିଳିଥିଲା ?

ଭାରତବର୍ଷ ଓ ଆଫ୍ରିକାକୁ ଦୁଇଭାଗ କରି ଦେଇଛି ଭାରତ ମହାସାଗର । ତାଞ୍ଜାନିଆ ଏକ ପୂର୍ବ ଆଫ୍ରିକୀୟ ରାଜ୍ୟ । ସେଇ ରାଜ୍ୟର 'ଲିଣ୍ଡି' ବନ୍ଦରଟି ସାଗର କୂଳରେ ଅବସ୍ଥିତ । ବନ୍ଦରଠାରୁ ଚାରିଦିନର ଚଲାବାଟ 'ଟେଣ୍ଡାଗୁରୁ' । ୧୯୦୭ ବେଳକୁ ଏ ଅଞ୍ଚଳଟି ଜର୍ମାନ ଉପନିବେଶ ଥିଲା । ସେତିକିବେଳେ ଜୀବାଶ୍ମ ବିଶେଷଜ୍ଞ ଏବର୍‌ହର୍ଟ ଫାର୍‌ସ ଦେଖିଲେ ଯେ ଟେଣ୍ଡାଗୁରୁର ଏକ ବିସ୍ତୃତ ଅଞ୍ଚଳରେ ପ୍ରାଗ୍ ଐତିହାସିକ ଅତିକାୟ ଜୀବନର ଅସ୍ଥି–ଅବଶେଷସବୁ ପଡ଼ି ରହିଛି । ତାଙ୍କ ତଥ୍ୟକୁ ଭିତ୍ତିକରି 'ବର୍ଲିନ ମ୍ୟୁଜିୟମ' ୱେରନର ଜେନେନ୍‌ସ୍କଙ୍କ ନେତୃତ୍ୱରେ ଏକ ଅସ୍ଥି ସଂଗ୍ରହକାରୀ ଦଳ ପଠାଇଲା । ଏମାନେ ପାଞ୍ଚଶହ ନିଗ୍ରୋ ଅଧିବାସୀଙ୍କ ସାହାଯ୍ୟନେଇ ଦୀର୍ଘ ଚାରିବର୍ଷ ପରିଶ୍ରମ କଲାପରେ ୨୫୦ ଟନ୍ ଯାଏ ଅସ୍ଥି ଜର୍ମାନ ପଠାଇଥିଲେ ।

କୁଢ଼ କୁଢ଼ ଅସ୍ଥି ଭିତରୁ ବହୁ ବର୍ଷର ପରିଶ୍ରମ ପରେ ଠିଆ ହେଲା ଏହି ଚାଳିଶ ଫୁଟ ଉଚ୍ଚର କଙ୍କାଳ । ଅନୁମାନ କରାଯାଏ ଏହାର ଓଜନ ସେ କାଳରେ ଥିବ ୮୦ରୁ ୧୦୦ ଟନ୍ । ଟେଣ୍ଡାଗୁରୁ ଅଞ୍ଚଳର ଏକ ଆବଦ୍ଧ ଜଳାଶୟ ନିକଟରେ ପ୍ରାୟ ୧୪୦ ନିୟୁତ ବର୍ଷତଳେ ବ୍ରେକ୍-ଇଓ-ସରସ ରହୁଥିଲା । ସାଥିରେ ଥିଲେ କେଣ୍ଟ୍ରୋସରସ ଓ ଆହୁରି ଅନେକ ଜାତିର ଡାଇନୋସର....



ଏଇଟି ହେଉଛି 'ସୁବାହୁ ଗୋଧି' ବା 'ବ୍ରେକ୍-ଇଓ-ସରସ' ଜାତୀୟ ଅନ୍ୟ ଏକ ଶାକଭୋଜି ଡାଇନୋସର । ତା'ର ଲମ୍ବା ବେକ, ସାପ ଭଳି ଜିଭ ଓ ମୁହଁ । ଜିରାଫ କୁଦାମାରି ଧାଇଁଲା ଭଳି ସେ କୁଆଡ଼େ ଧାଇଁ ପାରୁଥିଲା । ଏଡ଼େ ବଡ଼ ଥାଡ଼ୁଲା ଦେହକୁ ନେଇ ଧାଉଁଥିଲା ବେଳେ ମାଟି ଥରି ଉଠୁଥିବ, ଭୂକମ୍ପ ହେଉଥିବ ନିଶ୍ଚୟ !!



# ଆଉ କେତୋଟି ସୁବାହୁ ଡାଇନୋସର

ଏଇ ସବାହୁ ଅନେକ ପ୍ରକାରର । ଏମାନଙ୍କର ଗୋଡ଼ ନିଦା ଓ ବଳିଷ୍ଠ । ଚକାଚକା ପାଦରେ ପାଞ୍ଚୋଟି ଆଙ୍ଗୁଳି, ଛୋଟ ଓ ଚଉଡ଼ା । 'କାମୋରାସରସ'ର ଆଗଗୋଡ଼ ପ୍ରଥମ ଆଙ୍ଗୁଳିରେ ଲମ୍ବା ନଖ ଥିଲା । କୁହାଯାଏ ମାଟି ଉପରେ ବିଶାଳକାୟ ସୁବାହୁ ମାନଙ୍କର ଭାରସାମ୍ୟ ଓ ପାଦଟିକୁ ମାଟି ଉପରେ ଚାପି ରଖିବା ପାଇଁ ଏ ନଖର ଭୂମିକା ଥିଲା । ସୁବାହୁ ଡାଇନୋସରମାନେ ପାହୁଲ ପକେଇ ଚାଲୁଥିଲେ । ଅନୁମାନ କରାଯାଏ ଯେ ଘଣ୍ଟାକୁ ୧୦ କିଲୋମିଟରରୁ ଅଧିକ ବେଗରେ ଏମାନେ ଚାଲିପାରୁ ନଥିବେ । ଏମାନଙ୍କୁ ଦେଖିଲେ ହିଁ ଭୟ ଲାଗେ । ହିଂସ୍ର ଡାଇନୋସରମାନଙ୍କୁ ଏମାନଙ୍କର ଖାତିର ନଥିଲା । ତେଣୁ ଧାଇଁ ପଳାଇବାର ଆବଶ୍ୟକତା ନଥିଲା । ଅବଶ୍ୟ ପରବର୍ତ୍ତୀ ସମୟରେ ବିଶାଳକାୟ ମାଂସାଶୀ କେତେକ ହିଂସ୍ର ଡାଇନୋସର ଏମାନଙ୍କ ପାଇଁ ବିପତ୍ତି ହେଲେ ।

୬୦ରୁ ୬୫ଫୁଟ ଲମ୍ବର ଏଇ 'ସୁବାହୁ ଗୋଧି'ର ନାଆଁ 'କାମେରାସରସ'। ଉତ୍ତର ଆମେରିକାରେ ଏମାନେ ଦେଖାଯାଉଥିଲେ।



ଆମେରିକାର ଜାତୀୟ ଡାଇନୋସର ସ୍ମୃତିପୀଠ, 'ଉବ୍‌ଡା' ନିକଟରୁ ଖୋଳା ଯାଇଥିବା 'କାମେରାସରସ'ର ଅତିକାୟ ଅସ୍ଥିମାଳ। ବିଶେଷଜ୍ଞ ଜଣକ କେତେ ଛୋଟ ଦେଖାଯାଉଛନ୍ତି ସେଇ ହାଡଖଣ୍ଡଗୁଡ଼ିକ ପାଖରେ....



## 'ଡି-ପ୍ଲୋଡ୍-ଉ-କସ'

### (ଦ୍ୱୈତ-କଡ଼ି ଡାଇନୋସର)

ଥାକୁଲ ଥାକୁଲ ହାତୀଟା ମାଟି ଉପରେ ସବୁଠୁ ବଡ଼, ସବୁଠୁ କୋଦା । ଡେଙ୍ଗାରେ ଦେର ଫୁଟ; ଓଜନ ତା'ର ସାତଟନ । 'ହାତୀ ଆସୁଛି' କହିଲେ ସଭିଏଁ ଧାଇଁ ଆସିବେ ଦେଖିବାକୁ..... ।

ଜୁରାସିକ ଯୁଗରେ ଥିଲେ, ସେମିତି କେତେ ଥାକୁଲା ଥାକୁଲା ଡାଇନୋସର । ସେମାନଙ୍କ ପାଖରେ ହାତୀଟା ନିହାତି ଛୋଟ । ''ଡି-ପ୍ଲୋଡ୍-ଉ-କସ'' ଜୁରାସିକ ସମୟର ଅତିକାୟ ଜୀବଟାଏ.....ହାତୀଠୁ ଅନେକ ବଡ଼ । ଡେଙ୍ଗାରେ ସିଏ ତିରିଶ ଫୁଟ, ଓଜନ ତିରିଶ ଟନ୍, ମୁଣ୍ଡଠୁ ଲାଞ୍ଜଯାଏ ଲମ୍ବା ସତାଅଶି ଫୁଟରୁ ନବେ ଫୁଟ । ମଜବୁତ ତା'ର ଚାରିଟା ଗୋଡ଼କୁ କୁଣ୍ଢ ପାଇବ ନାହିଁ । ସେଗୁଡ଼ା ତ ଗୋଡ଼ ନୁହଁ; ପଥର ଖୁମ୍ବ । ଖୁମ୍ବ ଉପରେ କଡ଼ି ଥୋଇଦେଇ ତା' ଉପରେ ଶୁନଛାତ ପଡ଼େ । ଠିକ୍ ସେମିତି ତା'ର ଆଗ ଗୋଡ଼ ଓ ପଛଗୋଡ଼ ଉପରେ କଡ଼ି ଥୁଆ ହେଲା ଭଳି ଦେଖାଯାଏ ବୋଲି ଗ୍ରୀକ୍ ଭାଷାରେ ଏହି ଜୀବଟିକୁ କହନ୍ତି ''ଡି-ପ୍ଲୋଡ୍-ଉକସ'' ଅର୍ଥାତ୍ 'ଦୁଇଟା କଡ଼ି' । ତେଣୁ ଏହି ଅତିକାୟ ଜୀବଟିକୁ ଆମେ ଓଡ଼ିଆରେ କହିବା ''ଦ୍ୱୈତ-କଡ଼ି'' ବା 'ଦିକଡ଼ିଆ' ଡାଇନୋସର ।



ବିଶାଳ ତା'ର ଦେହକୁ ଟେକି ରଖିଥାଏ ଚାରି ଚାରିଟା ଗୋଡ଼ । ଗୋଡ଼ର ପାହୁଲ ଓ ଗଣ୍ଠି ଏତେ ଶକ୍ତ ଯେ ଚାଲିଲା ବେଳେ ତିରିଶ ଟନ୍‌ର ଭାର ବହନ କରିବାକୁ ସେଗୁଡ଼ିକ ଖୁବ୍ ସକ୍ଷମ ଥିଲା । ଜିରାଫ୍ ଭଳି ବେକ ଲମ୍ବି ଯାଇଥିଲା ଆଗକୁ... ଅଜଗର ଭଳି ସାପେଇ ଯାଇଥିଲା ଲାଞ୍ଜ । ଛେଳି ଭଳି ଛୋଟିଆ ମୁହଁଟିଏ । ଗଛ ଆଢୁଆଳରେ ମୁଣ୍ଡଟି ଲୁଚିଗଲା ବେଳେ ଜାଣିହେବ ନାହିଁ କେଉଁଟା ବେକ, କେଉଁଟା ଲାଞ୍ଜ ! ଦେଖିଲେ ମନେହେବ ଗୋଟାଏ ଦି'ମୁଣ୍ଡିଆ ଡାଇନୋସର ଭଳି !

ଝିଲ ଯେଉଁଠି ଗହୀରିଆ, ହ୍ରଦରେ ପାଣି ଅକାତ କାତ, ସେଇଠି ଥାଏ ''ଦ୍ୱୈତ-କଡ଼ି'' । ବେକ ମୋଟେଇର ମୁଣ୍ଡଟା ଖୁବ୍ ଛୋଟ । ସାପର ମୁଣ୍ଡଭଳି । ନାକପୁଡ଼ା ଓ ଆଖି ଥାଏ ତାଳୁ ଉପରେ । ପାଣି ଭିତରେ ଦିହଟାକୁ ଲୁଚେଇ ଦେଇ ମୁହଁଟିକୁ କାଢ଼ିଥାଏ ସେ । ପାଣି ଉପରେ ଦେଖାଯାଏ ଜୁକୁ ଜୁକୁ କରୁଥିବା ଦି'ଟା ଆଖି । ଆଖି ତଳକୁ ନାକପୁଡ଼ା....ନିଃଶ୍ୱାସ ନିଏ ସେଥିରେ । ମୁଣ୍ଡଟେକି ପାଣି ଭିତରୁ ବାହାରି ଆସିଲାବେଳେ ଛାତିରେ ଛନକା ପଶିଯିବି । ପାହାଡ଼ଟାଏ ହଠାତ୍ ପାଣି ଭିତରୁ ଉଠିଲା ଭଳି ଲାଗିବ । ସେତେବେଳେ ଦି'ଭାଗ ହୋଇଯାଉଥିଲା ପାଣି ।



ଅତି ଦୁର୍ବଳ ଥିଲା ତାର ଦାନ୍ତ । ପେନ୍‌ସିଲ ମୁହଁ ଭଳି ଗୋଜିଆ, ହେଲେ ମୁନିଆ ନୁହଁ । କଅଁଳ ପତ୍ର, ନରମ ଡାଳ ଖାଇବାକୁ 'ଡି-ପ୍ଲୋଡ୍-ଉ-କସ' ଭଲ ପାଏ । ଟାଣ କି ଟାଆଁସା ଡାଳପତ୍ର ଖାଇପାରୁ ନଥିଲା ସେ । ପାଣିତଳର ଗଛଲତା, ପାଣି ଘାସ ତା'ର ସବୁଠୁ ପ୍ରିୟ । ତିରିଶ ଟନ୍‌ର ସେଇ ବିଶାଳ ଦେହ ପାଇଁ ଟ୍ରକ୍ ଟ୍ରକ୍ ଗଛପତ୍ର ସେ ଖାଉଥିବ ! ଛୋଟିଆ ପାଟିରେ ଅନବରତ କଚର କଚର କରି ସେ ପତ୍ର ଚୋବାଇ ଯାଉଥିବ । ଅନ୍ୟାନ୍ୟ କୋଦା-ଡାଇନୋସରମାନଙ୍କ ତୁଳନାରେ 'ଦ୍ୱୈତ-କଡ଼ି'ର ଦେହ ପତଳା ଓ ହାଲୁକା । ଅଧିକାଂଶ ସମୟ ସେ ପାଣିରେ କଟାଉଥିଲା । କୁହାଯାଏ, ତା'ର ବିଶାଳ ଦେହଟା ପାଣି ଭିତରେ ସବୁବେଳେ ବୁଡ଼ି ରହୁଥିଲା । ପାଣି ଶୁଖିଗଲା ବେଳେ ତାକୁ ବିପତ୍ତି ପଡ଼ିଯାଉଥିଲା ।

ହ୍ରଦ ବା ଝିଲରେ ଜଳ ଉଦ୍ଭିଦର ଅଭାବ ପଡ଼ିଲେ ବେକ ଲମ୍ୱେଇ ପାଣିକୂଳ ଗଛରୁ ସେ ପତ୍ର ଖାଉଥିଲା । ବେଳେ ବେଳେ ମାଟି ଉପରକୁ ଉଠି ଆସୁଥିଲା ଖାଦ୍ୟ ପାଇଁ । ମାଟି ଉପରେ ଗହଳିଆ ଗଛ ଆଢୁଆଳରେ ଲୁଚି ରହୁଥିଲା 'ଏଲୁସରସ' । ଖାଇଲାବେଳେ ଦୁନିଆକୁ ଭୁଲି ଯାଉଥିଲା 'ଡି-ପ୍ଲୋଡ୍-ଉ-କସ' ।

ଠିକ୍ ସେତିକିବେଳେ 'ଏଲୁସରସ' କୁଦି ପଡୁଥିଲା । ବିଚରା ଉପାୟ ନ ପାଇ ଶକ୍ତ ଲାଞ୍ଜରେ ପିଟି ଛାଟି ଦେଉଥିଲା 'ଏଲୁସରସ'କୁ । ଧପାଲି ଧପାଲି ପାଣି ଭିତରକୁ ପଶିଯାଉଥିଲା । ସବୁବେଳେ ସୁଯୋଗ ତ ଆଉ ମିଳୁ ନଥିଲା । ବେଳେ ବେଳେ ଏଲୁସରସର କାମୁଡ଼ା ଖାଇ ସେ ଆସାଡ଼ ହୋଇ ମାଟି ଉପରେ ମରି ପଡୁଥିଲା ।

ଜୁରାସିକ୍ ଯୁଗର ଶେଷ ସମୟରେ ହ୍ରଦ ଓ ଝିଲ ଶୁଖି ଆସିଥିଲା । ଭୂଚଳନ ଯୋଗୁଁ ପୃଥିବୀରେ ଅନେକ ପରିବର୍ତ୍ତନ ଘଟିଥିଲା । କୁହାଯାଏ ସବୁ କୋଦା ଡାଇନୋସରମାନଙ୍କ ପାଇଁ ଜୁରାସିକ ଯୁଗର ଶେଷ ବେଳକୁ ଅକାଳ ପଡ଼ିଗଲା । ମାଂସାଶୀ ଡାଇନୋସର ମାନଙ୍କର ସିନା କପାଳ ଫିଟିଲା, ହେଲେ 'କୋଦା କୋଦା ଡାଇନୋସରମାନେ ପୃଥିବୀରୁ ଲୋପ ପାଇବାକୁ ଲାଗିଲେ ।

### ଓରିଣ୍ଟୋମାଇମସ: (ପକ୍ଷୀଚର):

ଅଷ୍ଟ୍ରିଚ ଭଳି ଏଇ ଡାଇନୋସରଟି ବିହଙ୍ଗକଟୀ । ଛୋଟ ଓ ହାଲୁକା ମୁଣ୍ଡ । ଖୁବ୍ ଦୂରକୁ ଦେଖି ପାରୁଥିବା ଆଖି, ଦନ୍ତବିହୀନ ଚଞ୍ଚୁ ଓ ଲମ୍ୱ ନହକା ବେକ । ହାତ ଦୁଇଟି ଲମ୍ୱା । ପ୍ରତି ହାତରେ ତିନୋଟି ଆଙ୍ଗୁଳି । ଉଡ଼ିଯାଉଥିବା କୀଟପତଙ୍ଗଙ୍କୁ ସହଜରେ ଧରି ପାରୁଥିଲା । ଦୌଡ଼ିବା ପାଇଁ ଶକ୍ତ ଗୋଡ଼ । ନଳୀ ଗୋଡ଼ ଜଂଘଠାରୁ ଏତେ ଲମ୍ୱା । ଲମ୍ୱ ପାଦରେ ତିନୋଟି ଆଙ୍ଗୁଳି । ଲାଞ୍ଜ ଏତେ ଶକ୍ତ ଓ ଲମ୍ୱା ଥିଲା ଯେ ଧାଇଁବାବେଳେ ଏହା ଭୂମିସହ ସମାନ୍ତରାଳ ହୋଇ ରହୁଥିଲା । ସାଢ଼େ ଏଗାର ଫୁଟିଆ (ବେଳେବେଳେ ୧୯ ଫୁଟ ଲମ୍ୱର ଓରିଣ୍ଟୋମାଇମସ ଦେଖାଯାଉଥିଲେ) ଏହି ଡାଇନୋସରଟି କ୍ରୋଟାସିଅସ ଯୁଗର ଶେଷ ବେଳକୁ ଦେଖାଯାଉଥିଲେ । କଅଁଳ ପତ୍ର ଓ ଫଳ ସହିତ କୀଟପତଙ୍ଗ ଓ ଛୋଟ ଛୋଟ ସରୀସୃପ ଥିଲା ଏହାର ଖାଦ୍ୟ । ଆମେରିକା, ଆଫ୍ରିକା, ଏସିଆ ଓ ୟୁରୋପରେ ଏମାନେ ବିଚରଣ କରୁଥିଲେ । ଗାଲି ମାଇମସ, ଷ୍ଟ୍ରୁଥିଓ ମାଇମସ ମଧ୍ୟ ଏହି ଶ୍ରେଣୀୟ ଡାଇନୋସର ।





ଏ ଯାବତ୍ ସବୁଠୁ ବଡ଼ ଦ୍ୱୈତକଡ଼ି ଡାଇନୋସରଟି ହେଉଛି 'ସେସ୍‌ମୋସରସ' । ପ୍ରତ୍ନତତ୍ତ୍ୱବିତ୍ ଡେଭ ଥମାସ ଅନବରତ ଖୋଳି ଚାଲିଛନ୍ତି ତା'ରି ଅସ୍ଥି କଙ୍କାଳକୁ । 'ନିଉ ମେକ୍ସିକୋ'ଠାରେ କଂକ୍ରିଟଭଳି ଟାଣ ହୋଇ ଯାଇଥିବା ବାଲିପଥର ଭିତରୁ ସ୍ପଷ୍ଟ ହୋଇ ଆସୁଛି ଏହି ବିଶାଳକାୟ ଡାଇନୋସରର ଅବୟବ । ସମ୍ପୂର୍ଣ୍ଣ କଙ୍କାଳଟିକୁ ଖୋଳି ବାହାର କରିବାପାଇଁ ଆହୁରି ଦଶବର୍ଷ ଲାଗିଯିବ ।

'ସେସମୋସରସ୍'ର କଙ୍କାଳ ଚିହ୍ନଟ ପରେ ପରେ ବୈଜ୍ଞାନିକମାନେ ଏବେ 'ସୁପରସରସ' ଓ 'ଅଲଟ୍ରାସରସ' ଭଳି ଆହୁରି ଅତିକାୟ ଡାଇନୋସରମାନଙ୍କର ସନ୍ଧାନରେ ଲାଗିଗଲେଣି ।





ଜର୍ମାନର 'ସେଂକେନବର୍ଗ ନେଚର ମ୍ୟୁଜିୟମ'ଠାରେ ୬୫ ଫୁଟ ଲମ୍ବର ଏହି ଦ୍ୱୈତକଡ଼ି ଡାଇନୋସରର କଙ୍କାଳଟି ରଖାଯାଇଛି । ୧୪୫ ନିୟୁତ ବର୍ଷତଳେ ଏହି ଡାଇନୋସରଟି ଆମ ପୃଥିବୀରେ ଚାଲୁଥିଲା । ତା'ର ବିରାଟ ବେକ ଓ ଲାଞ୍ଜକୁ ଦେଖି ମନେ କରାଯାଉଥିଲା ଯେ ସେ ଜଳଜୀବଟିଏ ହୋଇଥିବ । ମାତ୍ର ଏବେ ବିଶେଷଜ୍ଞମାନେ କହିଲେଣି ମାଟି ଉପରେ ପାହୁଲ ପକେଇ ସେ ଚାଲୁଥିଲା । ଲାଞ୍ଜଟିକୁ ଅନାୟସରେ ବୁଲାଇ ଶତ୍ରୁକୁ ଆଘାତ କରିପାରୁଥିଲା ।






## ସେସ୍‌ମୋସରସର ତିନୋଟି ପେଟ !!

ଆମର ଗୋଟିଏ ପେଟ । ଗାଈର ପେଟଟି ବହୁକୋଠରୀୟ । ସରଳ କଥାରେ କହିଲେ ଗାଈର ଦି'ଟା ପେଟ । ପ୍ରଥମ ପେଟଟି ମୁଣାଟିଏ.....ଅଧାଚୋବା ଖାଦ୍ୟ ସେଥିରେ ରହେ । ବ୍ରେକ୍-ଉଇ-ସରସର ଦୁଇଟି ପେଟ ଥିଲା । ପ୍ରଥମଟିରେ ଅଧାଚୋବା ଖାଦ୍ୟ ଶକ୍ତପେଶୀ ଓ ପଥର, ଗୋଡ଼ିର ଚାପରେ ଚୂନା ହୋଇ ନରମ ହେଉଥିଲା । ଦ୍ୱିତୀୟଟିରେ ପାକରସ ଦ୍ୱାରା ହଜମ ହେଉଥିଲା । ୧୫୦ ନିୟୁତ ବର୍ଷ ତଳେ ୫୦ ଫୁଟ ଲମ୍ବର ବେକ ଓ ୭୫ ଫୁଟ ଲମ୍ବ ଲାଞ୍ଜ ଥିବା ୧୫୦ ଫୁଟିଆ 'ସେସ୍‌ମୋସରସ'ର ତିନୋଟି ପେଟ ଥିଲା ବୋଲି ପ୍ରତ୍ନତତ୍ତ୍ୱବିତ୍ ଡେଭଗିଲେଟ ବିଶ୍ୱାସ କରନ୍ତି । ତାଙ୍କ ମତରେ ସେସ୍‌ମୋସରସର ଶ୍ୱାସନଳୀ ଓ ଗ୍ରସିକା ପାଖରେ ଅଧାଚୋବା ଖାଦ୍ୟ ପାଇଁ ଦୁଇଟି ପେଶୀମୟ ମୁଣା ଥିଲା । ଏହି ଦୁଇଟି ମୁଣାରେ ଅଧାଚୋବା ଖାଦ୍ୟ 'ବଟା ପିଠୋଉ' ଭଳି ହେଉଥିଲା ଓ ପାକାଶୟରେ ହଜମ ହେଉଥିଲା । ଗାଈର ବହୁକୋଠରୀୟ ପାକାଶୟଟିଏ ଅଛି । ପତ୍ର-ତୃଣ ଅଧାଚୋବା ହୋଇ 'ଅ' କୋଠରୀକୁ ଆସେ । ଏହି 'ଅ' କୋଠରୀଟି 'ପ୍ରଥମ ପାକାଶୟ' । ଟାଣଥିବା ଖାଦ୍ୟ 'ଜାଲିକା' କୋଠରୀ 'ଆ'ରେ ପାକରସରେ ନରମ ହୁଏ । ଗାଈ ବିଶ୍ରାମ ସମୟରେ 'ଅ' ଓ 'ଆ' କୋଠରୀରୁ ଅଧାଚୋବା ଖାଦ୍ୟକୁ ପାଟିକୁ ଆଣି ପାକୁଳି କରେ । ପାକୁଳି ପରେ ଖାଦ୍ୟ 'ବଟା ପିଠୋଉ' ପରି ହୋଇଯାଏ ଓ 'କ'-'ଖ' ପାକାଶୟରେ ହଜମ ହୁଏ ।

ଏଯାବତ୍ ସବୁଠୁ ବଡ଼ 'ସୁବାହୁ ଗୋଧି' ହେଉଛି ସେସ୍‌ମୋସରସ । କେତେକ ବୈଜ୍ଞାନିକ ଏଭଳି ବୃହତ୍‌କାୟ କଙ୍କାଳ ଖଣ୍ଡ ପାଇଲେଣି । ଯାହାକୁ ନେଇ 'ସୁପରସରସ' ଏବଂ ଅଲଟ୍ରାସରସ ଭଳି ଅତିକାୟ 'ସୁବାହୁ'ର କଳ୍ପନା ଜଳ୍ପନା ଚାଲିଛି ।









ଓପିସ୍ଥୋ କୋଏଲି କାଉଡ଼ିଆ
୪୦ ଫୁଟ ଲମ୍ବ
(ଶାକାହାରୀ ।)



ୟୁରୋପରେ
ସେଟିଓସରସ
ଲମ୍ବ-୬୦ ଫୁଟ ।



ସର୍ବଭକ୍ଷ
ମାସୋସଣ୍ଡିଲସ







## ଓମେଇସରସ
### (ବକଗ୍ରୀବ)

ଜୁରାସିକ ଯୁଗରେ ଗଛସବୁ ବଢୁଥିଲା ଆକାଶଛୁଆଁ । ପତରଖିଆ ଡାଇନୋସର ବେକ ବଢ଼େଇ ପତ୍ର ଖାଉଥିଲା । ଅନେକ ଥାକୁଲା ଥାକୁଲା ଶାକାହାରୀ ଡାଇନୋସର ଥିଲେ ସେ କାଳରେ । ଚର୍ ଚର୍ ପତ୍ର ଚରିଯାଉଥିଲେ । ଗୋଟିଏ ଗୋଟିଏ ଡାଇନୋସର ତ୍ରକ୍ ତ୍ରକ୍ ପତ୍ର ଖାଇଯାଉଥିଲେ । ମାଟି ଉପରୁ ପତ୍ର ସରି ଆସୁଥିଲେ ସେମାନେ ଗଛର ଉପର ପତ୍ର ବି ଖାଇ ପାରୁଥିଲେ । 'ଓମେଇସରସ'ର ସବୁଠୁ ଲମ୍ବାବେକ । ଚୀନ ଦେଶରେ ଏହି ଡାଇନୋସର ଦେଖାଯାଉଥିଲା । ସାପଭଳି ବେକ ଲମ୍ବେଇ ଗଛ ଉପରୁ ସେ ପତ୍ର ଟାଣି ଖାଇ ପାରୁଥିଲା । ସବୁଜ ଗଛର ଡାଳରେ ଲାଉ ଡଙ୍କିଆ ଯେମିତି ମିଶିଯାଉଥିଲା । ଡାଳମୋଟ ତା'ର ଦେହ । ଜାଣିହୁଏ ନାହିଁ ଗଛର ଡାଳ କେଉଁଟା, ସାପ କେଉଁଟା ? 'ଓମେଇସରସ'ର ବେକ ଓ ସରୁଡେଙ୍ଗା ଗଛର ଗଣ୍ଡି ଜଣାପଡୁ ନଥିଲା ସେମିତି । ଡେଙ୍ଗାଗଛର ଜଙ୍ଗଲ ଭିତରେ ଏଇ ବକଗ୍ରୀବ ଡାଇନୋସରମାନେ ଦଳ ଦଳ ହୋଇ ଚରା କରୁଥିଲେ । ଏମାନେ ବେକଟେକି ଉପରୁ ପତ୍ର ଖାଇବା ବେଳେ ବେକ ଓ ଗଛଗଣ୍ଡି ଏକାଭଳି ଜଣାଯାଉଥିଲା । ଚୀନ ପ୍ରତ୍ନତତ୍ତ୍ୱବିତ୍ 'ଡଙ୍ଗ୍' 'ଓମେଇସରସର' କଙ୍କାଳକୁ ଖୋଜି, ଯେଉଁ ଶାକାହାରୀ ଡାଇନୋସରକୁ କଳ୍ପନା କରିଛନ୍ତି, ତା'ର ବେକଠୁ ବଳି ବଡ଼ ବେକ ଆଉ କେଉଁ ଡାଇନୋସରର ନଥିଲା । ଏହାର ଦେହଟି ଅପେକ୍ଷାକୃତ କ୍ଷୁଦ୍ର ଥିଲା । ଏତେ ବଡ଼ ଲମ୍ବା ବେକ ଉପରେ ଥିବା ମୁଣ୍ଡଯାଏ ରକ୍ତ ପଠଉଥିବ ହୃତ୍‌ପିଣ୍ଡ । ଆମର ଛାତିଠୁ ମୁଣ୍ଡଯାଏ ଦୂରତା କେତେ ଅଳ୍ପ । ସ୍ତନ୍ୟପାୟୀ ପଶୁମାନଙ୍କର ବେକ ହୁଏତ ଲମ୍ବା, ମାତ୍ର ରକ୍ତ ସଞ୍ଚାଳନ ପାଇଁ ସମସ୍ୟା କେବେ ଦେଖାଯାଇ ନାହିଁ । 'ଜିରାଫ୍'ର ଆଠଫୁଟିଆ ବେକ ହୃତପିଣ୍ଡ ପାଖରୁ ମସ୍ତିଷ୍କର ଦୂରତା ଦଶଫୁଟ । ଏତେ



ଉଚ୍ଚା ବେକ ଉପରକୁ ରକ୍ତ ପଠାଇବା ପାଇଁ ତା'ର ଅଛି ଶକ୍ତ ହୃତପିଣ୍ଡଟିଏ । ସବୁ ପ୍ରାଣୀଙ୍କଠୁ ତା'ର ରକ୍ତଚାପ ପୁଣି ବେଶି । ମୁଣ୍ଡଟେକିଲା ବେଳେ ଓ ତଳକୁ ନୁଆଁଇଲା ବେଳେ ମସ୍ତିଷ୍କକୁ ଏକ ପ୍ରଶିରାଜାଲ ଆବୋରି ରହିଥିବାରୁ ମସ୍ତିଷ୍କରେ ରକ୍ତଚାପ ଜଣାପଡ଼େ ନାହିଁ ।

ସୁବାହୁ, ମେଘନାଦ, ଦ୍ୱୈତକଡ଼ି ଡାଇନୋସରଙ୍କର ଲମ୍ବା ବେକ ଉପରେ ମୁଣ୍ଡ ଏତେ ଛୋଟ ଯେ ଜିରାଫ ଭଳି ପ୍ରଶିରା ଜାଲ ବା ସେହିଭଳି ବ୍ୟବସ୍ଥା ଥିଲା କି ନାହିଁ ତା'ର କଳ୍ପନା ଜଳ୍ପନା ଚାଲିଛି । କେହି କେହି କହନ୍ତି ଆମ ଦେଖନ୍ତରେ ସମୁଦ୍ରରେ ଥିବା 'କଟଲଫିସ୍'ର ଯେତେବେଳେ ତିନିଟା ହୃତପିଣ୍ଡ, ଲମ୍ବାବେକ ଥିବା ଡାଇନୋସର୍ ମାନଙ୍କର ହୁଏତ ଆଠଟା ହୃତପିଣ୍ଡ ଥିବ ! ଏହି ହୃତପିଣ୍ଡ ଗୁଡ଼ିକ ଛାତି ଓ ବେକ ମଧ୍ୟରେ ରହିଥିବ ବୋଲି ଅନୁମାନ କରାଯାଏ । କେତେକ ବୈଜ୍ଞାନିକ କହନ୍ତି ଯେ ଏତେଗୁଡ଼ିଏ ହୃତପିଣ୍ଡ ଯଦି ଏମାନଙ୍କର ଥିବ ତେବେ ହୃଦ୍‌ରୋଗ ଯୋଗୁଁ ଏହି ବିଶାଳକାୟ ଡାଇନୋସରମାନଙ୍କର ହୁଏତ ବିଲୁପ୍ତି ଘଟିଛି ।

## ହୃଦୟ ତା'ର କେତେ ବଡ଼ !!

ଆମ ଦୁନିଆରେ ସବୁଠୁ ଲମ୍ବା ବେକ ଜିରାଫର । ସବୁ ପ୍ରାଣୀଙ୍କଠୁ ତା'ର ରକ୍ତଚାପ ତେଣୁ ବେଶୀ । ଦଶ ଫୁଟ ଉଚ୍ଚରେ ଥାଏ ତା'ର ମୁଣ୍ଡ । ହୃତପିଣ୍ଡ ସେଇ ମୁଣ୍ଡଯାଏ ରକ୍ତ ପଠେଇବ । ଜିରାଫର ହୃତପିଣ୍ଡଟି ଦୁଇଫୁଟିଆ; ଶକ୍ତ ମାଂସପେଶୀରେ ଗଢ଼ା । ହୃତପିଣ୍ଡର ପ୍ରାଚୀରର ମୋଟେଇ ତିନିଇଞ୍ଚ । ଓଜନ ୧୧.୩ କିଲୋଗ୍ରାମ ।

ବ୍ରାକିଓସରସ (ସୁବାହୁ)





ଜିରାଫ ପାଣି ପିଇବା ବେଳେ ମୁଣ୍ଡ ତଳକୁ କଲାବେଳେ ଗ୍ରୀବା-ଶିରା ବାଟେ ହୃତପିଣ୍ଡକୁ ଫେରୁଥିବା ରକ୍ତ ମସ୍ତିଷ୍କ ଆଡ଼କୁ ଲେଉଟିଯାଇ ଚାପବୃଦ୍ଧି କରିବା କଥା । ଗ୍ରୀବା-ଶିରାରେ କେତେଗୁଡ଼ିଏ ପରଦା ଅଳ୍ପ ଅଳ୍ପ ବ୍ୟବଧାନରେ ଅଛି । ଜିରାଫ ମୁଣ୍ଡ ନୁଆଁଇବା ବେଳେ ଏହିସବୁ ପରଦା ଆପେ ଆପେ ବନ୍ଦ ହୋଇଯାଏ ଓ ରକ୍ତର ଗତିରୋଧ କରେ । ଫଳରେ ହୃତପିଣ୍ଡକୁ ଫେରି ଆସୁଥିବା ରକ୍ତ ମୁଣ୍ଡପାଖକୁ ଆଉ ଲେଉଟିଯାଏ ନାହିଁ । ଜିରାଫ ମୁଣ୍ଡ ଉଠେଇଲେ କି ନୁଆଁଇଲେ ରକ୍ତଚାପ ବଢ଼େନାହିଁ କି କମେ ନାହିଁ ।

ଲମ୍ବା ବେକ ଥିବା ଡାଇନୋସରମାନଙ୍କର ହୁଏତ ଜିରାଫର ହୃତପିଣ୍ଡ ଭଳି ଖୁବ୍ ବଡ଼ ହୃଦୟଟିଏ ଥିବ ! ସେଇ ହୃଦୟଟିକୁ ସୁରକ୍ଷିତ କରି ରଖିବା ପାଇଁ ତେଣୁ ଏତେ ବିଶାଳକାୟ ଦେହ ଓ ଗୋଡ଼ର ସୃଷ୍ଟି ହୋଇଥିଲା !!




ଗ୍ରୀବା-ଧମନୀ ବାଟେ ଜିରାଫର ମୁଣ୍ଡଯାଏ ରକ୍ତ ଉଠେ । ଏତେ ଉଚ୍ଚାକୁ ରକ୍ତ ଉଠିଲେ ରକ୍ତର ବେଗ ଅଧିକ ହୋଇ ଥାଏ । ରକ୍ତଚାପରେ ମସ୍ତିଷ୍କର ସୂକ୍ଷ୍ମ ତନ୍ତୁ ଛିଡ଼ିଯିବା କଥା । ମାତ୍ର ତାହା ହୁଏ ନାହିଁ । ଜିରାଫର ମସ୍ତିଷ୍କକୁ ଘେରି ରହିଛି ସ୍ପଞ୍ଜ ଭଳି ପ୍ରଶିରା-ଗ୍ରନ୍ଥି । ଏହାକୁ କୁହାଯାଏ 'କୁହୁକ—ଜାଲ' । ତୀବ୍ର ବେଗରେ ଯେଉଁ ରକ୍ତ ଉଠେ, ତାହା ଏହି 'କୁହୁକ—ଜାଲ' ପାଖରେ ଶୀଥିଳ ହୋଇଯାଏ । ତେଣୁ ମସ୍ତିଷ୍କର କ୍ଷତି ଘଟେ ନାହିଁ ।

ପାଇପର ନଳୀ ସରୁ ହେଲେ ପାଣି ପିଚ୍‌କା ମାରେ; ପାଣିର ବେଗ କମିଯାଇଥାଏ । ସରୁ ପାଇପରେ ଆସୁଥିବା ପାଣି ମୋଟା ପାଇପକୁ ଗଲା କ୍ଷଣି ପାଣିର ବେଗ ଧୀର ହୋଇଯାଏ । ଠିକ୍ ସେହି ନିୟମରେ ଜିରାଫର ସରୁ ଗ୍ରୀବା—ଧମନୀ ରକ୍ତ ଉଠେଇନିଏ ଓ 'କୁହୁକଜାଲ' ପାଖରେ ଥିବା ସ୍ଥିତି-ସ୍ଥାପକ ଧମନୀ-ଗ୍ରନ୍ଥି ରକ୍ତ ଗ୍ରହଣ କରି ଫୁଲିଉଠେ । ରକ୍ତଚାପ ତେଣୁ କମିଯାଏ, ମସ୍ତିଷ୍କ ଅକ୍ଷତ ରହେ ।

## ଡାଇନୋସରର
## ଆଠଟା ହୃତ୍‌ପିଣ୍ଡ !!

ପ୍ରତ୍ୟେକ ଜୀବର ଗୋଟିଏ ହୃତପିଣ୍ଡ । ମାତ୍ର ପାଣିରେ ପହଁରୁଥିବା 'କଟଲଫିସ'ର ତିନିଟା ହୃତ୍‌ପିଣ୍ଡ ! ଛାତି ଭିତରେ ଗୋଟିଏ... ଗାଲିସି ପାଖକୁ ଲାଗି ଦୁଇଟି । କେତେକ ଡାଇନୋସର ବିଶେଷଜ୍ଞ ମନେକରନ୍ତି ଯେ ଡାଇନୋସରର ଏତେବଡ଼ ବେକ ଥିବାରୁ ଗୋଟିଏ ହୃତ୍‌ପିଣ୍ଡ ଦ୍ୱାରା ମୁଣ୍ଡପାଖକୁ ରକ୍ତ ଉଠାଇବା ସମ୍ଭବ ନୁହେଁ । ତେଣୁ ସେମାନଙ୍କ ମତରେ ଲମ୍ବା-ବେକ ଥିବା ଡାଇନୋସର ମାନଙ୍କର ଆଠଟା ଯାଏ ହୃତପିଣ୍ଡ ଥିଲା ।



## ବ୍ରନ୍—ଟୁ—ସରସ

### (ମେଘନାଦ ଡାଇନୋସର)

''ଯିଏ ଯେତେ କୋଦା, ସିଏ ସେତେ ଖାଏ.. ନ ଖାଇକି ବି ରହିଯାଏ ଅନେକ ଦିନ । ଲମ୍ବା ଲାଞ୍ଜ, କୁଣ୍ଢ ପାଉ ନଥିବା ଢଙ୍ଗ ଓ ଲମ୍ବା ବେକରେ ତା'ର ଚର୍ବି ଜମି ରହିଥାଏ । ତେଣୁ ଅଖିଆ ଅପିଆ ଅନେକ ବାଟ ଚାଲିଗଲେ ବି ସେ ଥକିପଡ଼େ ନାହିଁ'', ଏକଥା କହନ୍ତି ଡାଇନୋସର ବିଜ୍ଞାନୀ ଡେଭ ଗିଲେଟ । ଶାକାହାରୀ ଡାଇନୋସରମାନଙ୍କର ଅତିକାୟ ଶରୀର ଦେଖିଲେ କେହି ବିଶ୍ୱାସ କରିବ ନାହିଁ ଯେ ଏମିତି ଏକ ମୋଟା ଡାଇନୋସରଟିଏ ଥିଲା । ଗିଲେଟଙ୍କ ମତରେ ସେତେବେଳେ ଜଙ୍ଗଲ ଥିଲା ବ୍ୟାପକ...ଘଞ୍ଚ ଓ ପର୍ଯ୍ୟାପ୍ତ । 'ବ୍ରନ-ଟୁ-ସରସ' ସେଇ ପ୍ରକୃତିର ବରଦାନ । ସବୁଠୁ ମୋଟୁ ଶାକାହାରୀ ଡାଇନୋସରଟିଏ ଏଇ ବ୍ରନ୍-ଟୁ-ସରସ । ଚାଲିଗଲା ବେଳେ ମାଟି ଦୁଲୁକି ଉଠୁଥିଲା । ଆମେରିକାର କଲୋରାଡ଼ୋ ନଦୀ କୂଳରେ ତା'ର ଚକା ଚକା ପାଦଚିହ୍ନ ଏଯାଏ ରହିଛି ଅକ୍ଷତ ଅବସ୍ଥାରେ । ସେଇ ପାଦଚିହ୍ନକୁ ଚିହ୍ନି ମାର୍ଟିନ ଲକ୍‌ଲେ କହନ୍ତି ଯେ ପାଞ୍ଚୋଟି ଅତିକାୟ 'ବ୍ରନ୍-ଟୁ-ସରସ' ୧୫୦ ନିୟୁତ ବର୍ଷ ତଳେ ସେଇବାଟେ ଯାଇଥିଲେ । ଗଲାବେଳେ ଆଖ ପାଖ କମ୍ପି ଉଠିଥିବ । ମାଟିରେ ପାଦଚିହ୍ନ ଯେତିକି ଗାତକରିଛି, ସେଇ ଗାତରୁ 'ବ୍ରନ୍-ଟୁ-ସରସ'ର ଓଜନ କେତେ, ହିସାବ କରି କହି ହେଉଛି । ଚାଲିଗଲା ବେଳେ ସେ ଦୂଲ୍‌ଦୁଲ୍ ହୋଇ







ଚାଲୁଥିଲା । ଉଡ଼ିବ ଉଡ଼ିବ ବୋଲି ହେଉଥିବା ଚଢ଼େଇଟିଏ ମାଟିକୁ ଠେସି ଠେସି ଯେମିତି ଧାଏଁ, 'ବ୍ରନ୍-ଟୁ-ସରସ' ସେମିତି ଚାଲୁଥିଲା । ତା' ଚାଲିରେ ମାଟି ଥରି ଉଠୁଥିଲା ବୋଲି ଗ୍ରୀକ୍ ଭାଷାରେ ନାଆଁ ଦିଆହେଲା 'ବ୍ରନ୍-ଟୁ-ସରସ' ଅର୍ଥାତ୍ ମେଘନାଦ । ମେଘନାଦ ଡାଇନୋସରର ଲମ୍ବ' ୭୦ ଫୁଟ, ଓଜନ ୨୭ରୁ ୪୦ ଟନ୍ । ପଥର ଖମ୍ବ ଭଳି ତା'ର ଚାରିଟା ଗୋଡ଼ । ସାତଟା ହାତୀର ଦେହ, ବେକ ଯେତିକି ଲମ୍ବା, ଲାଞ୍ଜ ସେତିକି ଲମ୍ବା । ବେକ ମୋଟେଇର ମୁଣ୍ଡ, ସାପ-ମୁଣ୍ଡ ଭଳି । ପାଟିଟା ଦେହ ତୁଳନାରେ ଛୋଟ । ସେଇ ପାଟି ଭିତରେ ଥିଲା ଚବିଶଟି ଦାନ୍ତ । ସେଥିରେ ସେ ତାଳପତ୍ର ଛିଣ୍ଡାଏ, ମାତ୍ର ଚୋବେଇ ପାରେନାହିଁ । ଘାସପତ୍ର ସାଥିରେ ଅନ୍ୟ ଶାକାହାରୀ ଡାଇନୋସରଙ୍କ ଭଳି ବଡ଼ ବଡ଼ ଗୋଡ଼ି ଗିଳି ପକାଏ । ଗୋଡ଼ିତକ, ଶକ୍ତମୁଣାରେ ରହି ଖାଦ୍ୟକୁ ଚୁରି ପିଠୋଉ କରିବାରେ ସାହାଯ୍ୟ କରେ ।

ସନ୍ତସନ୍ତିଆ, ବୁଦ୍‌ବୁଦକିଆ ଜଙ୍ଗଲ ପାଖରେ ଥାଏ 'ବ୍ରନ-ଟୁ-ସରସ' । ମାଟି ଉପରେ ସେ ବୁଲେ । ଅଣ୍ଡା ଦିଏ । ଏଡ଼େ ବଡ଼ ଜୀବର ଅଣ୍ଡା କେତେବଡ଼ ହୋଇଥିବ ? ଶହେଟା କୁକୁଡ଼ା ଅଣ୍ଡାକୁ ଧାଡ଼ିକରି ସଜେଇ ଥୋଇଲେ ଲମ୍ବ ଯେତିକି ହେବ ମେଘନାଦ ଡାଇନୋସରର ଅଣ୍ଡାଟା ସେତିକି ଲମ୍ବ ।

ଏଇ 'ବ୍ରନ-ଟୁ-ସରସ'କୁ କେତେକ କହନ୍ତି 'ଆପାଟୋସରସ' । 'ବ୍ରନ-ଟୁ-ସରସ' ପ୍ରକୃତରେ ଆପାଟୋରସ ଜାତିର ଡାଇନୋସର । 'ଏଲୁସରସ' ତା'ର ବଡ଼ ଶତ୍ରୁ । ଛକି ଥାଏ ତାକୁ ମାଟି ଉପରେ ମାଡ଼ିବସି ଶିକାର କରିବାକୁ । ଶକ୍ତ ଲାଞ୍ଜରେ ସେ କେତେଥର ପିଟା ଖାଇଛି । 'ବ୍ରନ-ଟୁ-ସରସ'କୁ ତେଣୁ ତା'ର ଭାରି ଭୟ । ହେଲେ ତା'ର ସୁଆଦିଆ ମାଂସକୁ ସେ ଭୁଲିପାରେ ନାହିଁ । ଦେଖୁ ଦେଖୁ ସେ ତା'ର ପିଛା ଧରୁଥିଲା । ଖାଇବା ପିଇବା ଭୁଲିଯାଉଥିଲା । ଗୋଟିଏ ମାତ୍ର ଇଚ୍ଛା... ବ୍ରନ-ଟୁ-ସରସଟିଏ ସେ ଶିକାର କରିବ ।



## ମେଘନାଦର ମୁଣ୍ଡ ଓଲଟପାଲଟ

ମାଟିତଳୁ ହାଡ଼ ମିଳେ । ଅତିକାୟ ଡାଇନୋସର ମାନଙ୍କର ହାଡ଼ । ସେଇ ସବୁ ହାଡମାନଙ୍କୁ ଚିହ୍ନି କଙ୍କାଳ ନିର୍ମାଣ କରାହୁଏ । ସବୁବେଳେ ସବୁତକ ହାଡ ମିଳେ ନାହିଁ । ତେଣୁ ଡାଇନୋସର ବିଜ୍ଞାନୀକୁ ଅସୁବିଧାର ସାମ୍ନା କରିବାକୁ ପଡ଼େ । କେଉଁ ହାଡ କାହାର, ସେ କେଉଁଠି ରହିବ, ତା'ର ଆପାତଃ ନକ୍ସାଟିଏ କରିବାକୁ ହୁଏ । ସମୟେ ସମୟେ କଳ୍ପନା କରି ନକଲି ହାଡ ମଧ କରାଯାଇଥାଏ ଓ ନିର୍ଦ୍ଦିଷ୍ଟ ନିୟମରେ କଙ୍କାଳ ପ୍ରସ୍ତୁତ କରାଯାଏ । ଏଥିପାଇଁ ଅସୀମ ଧୈର୍ଯ୍ୟ ଓ କଳ୍ପନା ଆବଶ୍ୟକ ।

ମାଟିତଳେ ଅତିକାୟ ଜୀବମାନଙ୍କର ହାଡକଙ୍କାଳ ପୋତିହୋଇ ପଡ଼ିଛି ବୋଲି ୧୮୭୦ରେ ଆମେରିକାରେ ଚହଳ ପଡ଼ିଗଲା । ଓ.ସି.ମାର୍ସ ଏବଂ ଏଡ୍‌ୱାର୍ଡ କୋପ୍ ଦୁଇଜଣ ଡାଇନୋସର ବିଜ୍ଞାନୀଙ୍କ ମଧରେ ପ୍ରତିଯୋଗିତା ଲାଗିଲା । କିଏ କେତେ ଶୀଘ୍ର ନୂଆ-ଡାଇନୋସରର କାହାଣୀଟିଏ କହିବ ।' ଏହି ପ୍ରତିଯୋଗିତାକୁ କୁହାଗଲା 'ଡାଇନୋସର-ଯୁଦ୍ଧ' । ବିଶାଳକାୟ ଗୋଟିଏ ବ୍ରନ୍-ଟୁ-ସରସର ହାଡକଙ୍କାଳ ପାଇଗଲେ ଓଥିନିଏଲ ମାର୍ସ । ହାଡମାନଙ୍କୁ ତୁରନ୍ତ ଖଞ୍ଜି ସାରି ଦେଖିଲେ, ଖପୁରୀଟି ମାଟିତଳୁ ମିଳିନାହିଁ । ସେଇ ବିଶାଳ ଡାଇନୋସରର ମୁଣ୍ଡଟି କିଭଳି ଦେଖାଯିବ ! କୁହାଯାଏ ଯେ ଗୋଟିଏ ଦ୍ୱିତ କଡ଼ି (ଡିପ୍ଲୋ-ଡୁ-କସ)ର ଖପୁରୀଟିକୁ 'ବ୍ରନ୍-ଟୁ-ସରସ'ର ବେକରେ ଯୋଡ଼ି ଦିଆଗଲା । ତେଣୁ ଦୀର୍ଘ ଶହେ ବର୍ଷ ଧରି ଏଇ ଦୁଇଟି ଡାଇନୋସରର ମୁଣ୍ଡ ଏକାଭଳି ବୋଲି କୁହାଗଲା । ଏବେ ଜନ୍ ମାସିଣ୍ଟୋସ ଓ ଡାଭିଡ ବରମ୍ୟାନ ଏହାର ସଂଶୋଧନ କରିଛନ୍ତି ଏବଂ ବ୍ରନ୍-ଟୁ-ସରସ ଦେହରେ ଠିକଣା ମୁଣ୍ଡ ଯୋଡ଼ା ଯାଇଛି ।



**ତାଳଗଛ ପରି ଗୋଡ !**

ଆମେରିକାର କଲୋରାଡୋ ନଦୀକୂଳରୁ ମିଳିଥିବା ଗୋଟିଏ ଅତିକାୟ ଶାକାହାରୀ ଡାଇନୋସରର ଗୋଡ ହାଡ଼ । ସେଇ ହାଡ଼କୁ ଖଞ୍ଜି, ତା ପାଖରେ ଠିଆ ହୋଇଛନ୍ତି 'ଜିମ୍-ଜେନ୍‌ସେନ୍' । ଯାହାର ଗୋଡ ହାଡ଼ ଏତେ ବିଶାଳ, ସେ ଡାଇନୋସରଟି କେତେ ଅତିକାୟ ହୋଇଥିବ ସତେ !



# ମେଲାନୋରୋସରସ (କଳାପାହାଡ଼ିଆ)

ଏହି ଡାଇନୋସରଟି ସୃପକଟୀ ଥିଲା, ଲମ୍ବା ବେକ, ଲାଞ୍ଜ ଓ ଛୋଟ ମୁଣ୍ଡ ଥିଲା । ତା'ର ଲମ୍ବା ଓ ପୃଥୁଳ ଶରୀରକୁ ଶକ୍ତ ଜଂଘ ଓ ଗୋଡ ସଳଖ କରି ଟେକି ରଖିଥିଲା । ଏହାର ଦୈର୍ଘ୍ୟ ୧୯ରୁ ୪୦ ଫୁଟ (୬ ଠାରୁ ୧୨ ମିଟର) ଥିଲା । ଟ୍ରାଇଆସିକ ଓ ଜୁରାସିକ୍ ଯୁଗର ସନ୍ଧିକ୍ଷଣରେ ଏହି ଡାଇନୋସରଟି ୟୁରୋପ, ଦକ୍ଷିଣ ଆମେରିକା, ଏସିଆ ଏବଂ ଆଫ୍ରିକା ଅଞ୍ଚଳରେ ଚଳପ୍ରଚଳ ହେଉଥିଲେ ।



## ଓରିନ୍ଥୋଲେଷ୍ଟିସ: (ପକ୍ଷୀ ଚୋର):



ସରୀସୃପକଟୀ ଏହି ଡାଇନୋସରଟି ଦୁଇ ପାଦରେ ଚାଲୁଥିଲା । ଏହାର ନାକ, ହାତ, ଗୋଡ଼ ଓ ଲାଞ୍ଜ ଖୁବ୍ ଲମ୍ବା । ଚଞ୍ଚୁରେ ମୁନିଆ ମୁନିଆ ଦାନ୍ତ । ହାତ ଓ ଗୋଡ଼ ଉଭୟ ତିନି ଆଙ୍ଗୁଳିଆ । ମଣିଷଠୁ ଖୁବ୍ ହାଲୁକା, ମାତ୍ର ଡେଙ୍ଗା । ଏମାନେ ଥିଲେ ଦକ୍ଷ ଶିକାରୀ । ଉଡ଼ି ଯାଉଥିବା କୀଟପତଙ୍ଗମାନଙ୍କୁ ଅକ୍ଲେଶରେ ଖାଇ ଦେଉଥିଲେ । ବିଲୁଆ ବା ହେଟାଭଳି କେତେକ ମୃତ ଡାଇନୋସରର ମାଂସ ମଧ୍ୟ ଖାଉଥିଲେ । ଏମାନଙ୍କର ଲମ୍ୱ ଥିଲା, ପ୍ରାୟ ପାଞ୍ଚଫୁଟ ପାଖାପାଖି (୪ ଫୁଟ ୮ ଇଞ୍ଚ) କ୍ରେଟାସିୟସର ଶେଷାର୍ଦ୍ଧକୁ ଉତ୍ତର ଆମେରିକା, ୟୁରୋପ, ଆଫ୍ରିକା, ଏସିଆ ଓ ଅଷ୍ଟ୍ରେଲିଆରେ ଦେଖାଯାଉଥିଲେ । ଭାରତର ଜବଲପୁରରେ ଏହି ଜାତିର ଡାଇନୋସରଙ୍କୁ 'ଜବଲପୁରିଆ' ବୋଲି ନାମକରଣ କରାଯାଇଛି ।



# ପ୍ରୋଟୋସେରେଟପସ୍
## (ପୋରୁହାଁ ଶିଙ୍ଗା)



ଜୁରାସିକ ଯୁଗ ସରି ଯାଇଥାଏ । କ୍ରେଟାସିୟସ ଯୁଗରେ ତାଳଗଛ ଭଳି ଟାଣ ପତ୍ର ଓ ସିକାଡସର ଡାଳ । ଚୋବେଇ ଖାଇବା ପାଇଁ ଶକ୍ତ ଦାନ୍ତ ଜରୁରୀ ହୋଇ ପଡ଼ିଥାଏ । ଆଗରୁ ଗଛପତ୍ର ଗହଳ ଥିଲା । ପ୍ରଚୁର ଖାଦ୍ୟ ମିଳୁଥିଲା । କୋଦା କୋଦା ଡାଇନୋସର ମନଇଚ୍ଛା ଖାଉଥା'ନ୍ତି; ଗଛଡାଳ ପତ୍ର ଚରି ଯାଉଥା'ନ୍ତି । ଖାଦ୍ୟ ନିଅଣ୍ଟ ହେଲେ ଲଢ଼େଇ ହୁଏ । ଲଢ଼େଇରେ ଯିଏ ବଳିଯିବ ସେ ଜିଇ ରହିବ, ନିର୍ବଳୁଆ ତହଳବିକଳ ହେବ । ଏକଥା ପ୍ରକୃତିର ନିୟମ । ହୁଏତ ଲଢ଼େଇ ବେଳ ଆସିବା ଆସିବା ହେବାରୁ ପ୍ରକୃତି ଡାଇନୋସରର ଥୋମଣିକୁ ଶକ୍ତ କଲା । ଜନ୍ତୁ ଜାନୁଆରଙ୍କ ଶିଙ୍ଗ ଏକ ହତିଆର । ଶିଙ୍ଗରେ ଭୂଷିଦେଲେ ପେଟ ଫାଟିଯିବ । ଆଗରୁ ଡାଇନୋସରମାନଙ୍କର ଶିଙ୍ଗ ନଥିଲା । ତେଣୁ ଶିଙ୍ଗ ନ ହେଲେ ବି ଶିଙ୍ଗ ଭଳି ଶକ୍ତ ହାଡ ନାକଦଣ୍ଡୀ ପାଖରେ ଥିଲା 'ପ୍ରୋଟୋସେରେଟପସ୍'ର ।

ତା' ନାକ ଉପରେ ଏଇ ବଙ୍କା ହାଡଖଣ୍ଡଟି ଠିକ୍ ଶୁଆଚଞ୍ଚୁ ଭଳି । ସେଇ ବକ୍ରହାଡ ଖଣ୍ଡକୁ ନାକ ଉପରେ ଦେଖି କେତେକ ବୈଜ୍ଞାନିକ ମନେ କଲେ ଯେ ଗଣ୍ଡାଭଳି ହୁଏତ ଏହାର ଶିଙ୍ଗଟିଏ ଥିଲା ।

ମାଟିତଳୁ ଯେତେ ଖପୁରୀ ଆଗରୁ ମିଳିଥିଲା, କାହାର ଏଭଳି ଶିଙ୍ଗ ବା ଶକ୍ତ ଥୋମଣି ହାଡ ନ ଥିଲା । ଯିଏ ଆଗ ଜନ୍ମ ନେଇଥାଏ ସେ 'ପୋରୁହାଁ' । ଶିଙ୍ଗଭଳି ଶକ୍ତ ଥୋମଣି ନେଇ ଏହି ଡାଇନୋସରଟି ପୃଥିବୀକୁ ଆଗ ଆସିଥିବାରୁ ଓଡ଼ିଆରେ ତାକୁ କହିବା 'ପୋରୁହାଁ ଶିଙ୍ଗା' । ଗ୍ରୀକ୍ ଭାଷାରେ ଯା'ର ନାଆଁ 'ପ୍ରଥମ-ଶିଙ୍ଗ-ମୁଖ' ବା 'ପ୍ରୋଟୋସେରେଟପ୍‌ସ' ।

ଖଣ୍ଡାକୁ ଢାଲ ଶୋଭାପାଏ । ଥୋମଣି ଶକ୍ତ ହେବାରୁ, ବେକକୁ ନରମ ହାଡର ଅର୍ଦ୍ଧ ବକ୍ରାକାର କଳମ୍ୱଳଟିଏ ଘୋଡାଇ ରଖିଲା । ମାଟିତଳୁ ଯେଉଁ ହାଡ଼ ଓ ଖପୁରୀ ମିଳିଥିଲା, ତାକୁ ଯୋଡିଯାଡି ବୈଜ୍ଞାନିକମାନେ ଗୋଟିଏ ବିରାଟକାୟ ଏଣ୍ଡୁଅଭଳି ରୂପ କଳ୍ପନା କଲେ । ଏହାର ଲମ୍ୱ ଥିଲା ୫ ରୁ ୬ ଫୁଟ । ଛୋଟ ଚାରୋଟି ଗୋଡରେ ବିଶାଳ ଦେହର ମାଟି ଉପରେ ଟେକି ଟେକି ଚାଲୁଥିଲା ସେ । ଦିହଟା ଗୋଧିଭଳି ମାତ୍ର ମୁଣ୍ଡଟା ଖୁବ୍ ବଡ଼ । ସାରା ଶରୀରର ଏକ ପଞ୍ଚମାଂଶ କେବଳ ମୁଣ୍ଡ । ମୁଣ୍ଡଟା ନଇଁଥାଏ ଭୂଇଁ ଆଡ଼କୁ । ବେକରେ ମେରୁହାଡ ଲାଗିଥିଲା । ଖପୁରୀକୁ ଧରି ରଖିଥିଲା ବେକର ଶେଷ ମେରୁହାଡଟି । ଏହି ମେରୁହାଡ ଠିକ୍ ଏକ ଖୋପ ଭିତରେ ଏଭଳି ଖଞ୍ଜି ହୋଇ ରହିଥିଲା ଯେ ଶରୀରକୁ ମାଟି ଉପରେ ସ୍ଥିର ରଖି ସେ ମୁଣ୍ଡଟିକୁ ସହଜରେ ଯେଣେ ଇଚ୍ଛା ତେଣେ ବୁଲାଇ ପାରୁଥିଲା । ଆଗଗୋଡ ଗୋଧିଭଳି କାନ୍ଧ ଓ



ବେକକୁ ଠେସି ରଖିଥିଲା । ତା'ର କାନ୍ଧ, ମୁଣ୍ଡ ଓ ଗୋଡକୁ ଯୁଦ୍ଧ ପାଇଁ ଉପଯୁକ୍ତ ଭାବେ ତିଆରି କରିଥିଲା ପ୍ରକୃତି । ସମୟକ୍ରମେ ବେକ ଚାରିକଡି ଥିବା ନରମ ହାଡର କମ୍ବଳ 'ଶିଙ୍ଗମାଳ'ରେ ରୂପାନ୍ତରିତ ହୋଇଥିଲା ।

'ପ୍ରୋଟୋସେରେଟପ୍‌ସ' ବା 'ପୋରୁହାଁ ଶିଙ୍ଗା' ଖୁବ୍ ସୁଧାର ଓ ଶାନ୍ତ ଡାଇନୋସରଟିଏ ଥିଲା । ମଙ୍ଗୋଲିଆର ଗୋବି ମରୁଭୂମିରେ ଏମାନେ ଏକାଠି ରହୁଥିଲେ । ଦଳଗତ ଜୀବନଯାପନ କରୁଥିବା ଏହି 'ପୋରୁହାଁ ଶିଙ୍ଗା' ସ୍ୱଭାବତଃ ସାମାଜିକ ଡାଇନୋସରଟିଏ ଥିଲା ବୋଲି ମନେ କରାଯାଏ । ଭୂମିରେ ଗୋଲେଇକରି ସେ ଅଣ୍ଡା ଦେଉଥିଲା । ଅଣ୍ଡା ପାଖେ ପାଖେ ଜଗି ରହୁଥିଲା । ଛୁଆ ଫୁଟିବା ଯାଏ 'ପ୍ରେଟୋସେରେଟପ୍‌ସ' ସେ ଅଞ୍ଚଳରେ ନିଘା ରଖୁଥିଲା । ଅଣ୍ଡାର ଲମ୍ବ ଥିଲା ୨୦ ସେଣ୍ଟିମିଟର । ଗୋଟିଏ ଲମ୍ବା ଆଳୁ ଭଳି ଦେଖାଯାଉଥିଲା ।

ଛୁଆ 'ପ୍ରୋଟୋସେରେଟପ୍‌ସ'ର ମୁଣ୍ଡରେ ନରମ ହାଡର କମ୍ବଳ ରହୁ ନଥିଲା । କୁକୁଡ଼ା ଛୁଆ ବଢ଼ିଲେ ତା'ର ଯେମିତି ଲାଲ ଟୁକ୍ ଟୁକ୍ ଚୂଳ ଗଜୁରି ଆସେ 'ପୋରୁହାଁ ଶିଙ୍ଗା'ର ବେକକୁ ଘୋଡେଇବା ପାଇଁ କମ୍ବଳ ସେମିତି ଗଜୁରି ଆସୁଥିଲା ।

ଦାନ୍ତ ଥରେ ପଡ଼ିଲେ ଆଉ ଥରେ ହୁଏ । ମାତ୍ର ବୁଢ଼ାବେଳେ ଦାନ୍ତ ପଡ଼ିଗଲେ ଆଉ କଅଁଳେ ନାହିଁ । ମଣିଷ ପାକୁଆ ହୋଇଯାଏ । ପୋରୁହାଁ ଶିଙ୍ଗାର ଦାନ୍ତ ଭାଙ୍ଗିଗଲେ କି ଗଳି ପଡ଼ିଲେ, ସେ ଦାନ୍ତ ଆଉଥରେ ଉଠେ । ସେ କେବେ ପାକୁଆ ହୁଏ ନାହିଁ । ଶେଷ ଜୀବନଯାଏ ଦାନ୍ତ ଭାଙ୍ଗିଲେ ବି କଅଁଳି ଆସେ । ତା'ର ତଳମାଡ଼ିରେ ଦାନ୍ତଗୁଡ଼ିକ ଖୁବ୍ ଶକ୍ତ । କେହି କେହି ଅନୁମାନ କରନ୍ତି ଶକ୍ତ ଦାନ୍ତ ଉପରେ ଉପଯୁକ୍ତ ଚାପ ଦେଇପାରିବ ବୋଲି ତା'ର ଥୋମଣି ଖୁବ୍ ମଜବୁତ୍ ଓ ଶକ୍ତ ଥିଲା । ଟାଣ ତାଳପତ୍ରକୁ ସେ ସହଜରେ ଚୋବେଇ ଗୁଣ୍ଡକରି ଖାଇ ପାରୁଥିଲା ।

ମାଂସାଶୀ ଡାଇନୋସର ଏହାର ମୁଣ୍ଡ ବା ବେକକୁ ହଠାତ୍ ମୋଡି ଦେଇ ପାରୁ ନଥିଲା । କେବଳ ପିଠି ଓ ଲାଞ୍ଜକୁ ଶକ୍ତ ପଂଝାରେ ଚାପି ଦେଲ । ବେଳେ 'ପ୍ରୋଟୋସେରେଟପ୍‌ସ' ଲେଉଟି ପଡ଼ି ତା'ର ଶୁଆଚଞ୍ଚୁରେ ଶତ୍ରୁର ପେଟକୁ ଚିରି ପକାଉଥିଲା । ଫଳରେ ଶତ୍ରୁ ଜୀବନ ବିକଳରେ ଧାଇଁ ପଳାଉଥିଲା... ।





## ଅଣ୍ଡାଚୋରଃ 'ଓଭିରାପ୍ଟର'

ଯେଉଁଠି 'ପ୍ରୋଟୋସେରେଟପ୍‌ସ' ବା 'ପୋଗୁହାଁ ଶିଙ୍ଗା' ଦଳ ଦଳ ହୋଇ ଅଣ୍ଡା ଦିଅନ୍ତି ସେଇଠୁ ଅଳ୍ପ ଦୂରରେ ଲୁଚି ଲୁଚି ଥାଏ 'ଓଭିରାପ୍ଟର'।

ପାଞ୍ଚରୁ ସାଢ଼େ ଛଅ ଫୁଟ ଲମ୍ବା। ପଞ୍ଝାରେ ତିନୋଟି ମାତ୍ର ଆଙ୍ଗୁଳି। ଆଙ୍ଗୁଳିରେ ତୀକ୍ଷ୍ଣ ନଖ। ପଛ ଦି'ଗୋଡ ଖୁବ ବଡ଼। ତେଣୁ ଗୋଡରେ ସେ ଡଗଡଗ ହୋଇ ଧାଇଁ ପଳାଏ। ପାଟିରେ ଦାନ୍ତ ନାହିଁ।

ପାକୁଆ। ଅଣ୍ଡା ଭାଙ୍ଗିବା ପାଇଁ ଶୁଆ ଥଣ୍ଟ ଭଳି ମୁହଁ। ହାତରେ ଅଣ୍ଡା ଧରି ଦଉଡ଼ି ପଳାଏ। ଥଣ୍ଟ-ମୁହଁରେ ଭାଙ୍ଗି ତାକୁ ଖାଇଯାଏ। ସେ 'ପୋଗୁହାଁ ଶିଙ୍ଗା'ର ଅଣ୍ଡା ଚୋରାଇବାକୁ ଗଲାବେଳେ କନକନ ହୋଇ ଚାରିଆଡ଼କୁ ଚାହେଁ। ଡର ଡର ହୋଇ ଅଣ୍ଡା ଭାଙ୍ଗି ଖାଇଯାଏ। ନ ହେଲେ ହାତମୁଠାରେ ଅଣ୍ଡା ଧରି ପଳାଏ। ବେଳେବେଳେ ମା' 'ପ୍ରୋଟୋସେରେଟପ୍‌ସ' ହାବୁଡ଼ରେ ପଡ଼ିଗଲେ.... ତା'ର ମରଣ ନିଶ୍ଚିତ। ମା' 'ପ୍ରୋଟୋସେରେଟପ୍‌ସ' ତାକୁ ଆଖି ପିଛୁଳାକେ ତା' ଥଣ୍ଟ ମୁହଁରେ ଚିରି ମାରି ପକାଏ। 'ପ୍ରୋଟୋସେରେଟପ୍‌ସ'ର କଙ୍କାଳ ଓ ଖପୁରୀ ଯେଉଁ ମାଟିତଳୁ ମିଳେ ଠିକ୍ ସେଇଠି ବା ପାଖାପାଖି ଓଭିରାପ୍ଟରର କଙ୍କାଳ ଓ ଖପୁରୀ ମିଳିଥାଏ। ପ୍ରଥମେ ଓଭରାପ୍ଟରର ଭଙ୍ଗା ଖପୁରୀଟିଏ ମିଳିଥିଲା ଅନ୍ୟାନ୍ୟ ପୋଗୁହାଁ ଶିଙ୍ଗାଙ୍କ କଙ୍କାଳ ସାଥୀରେ। ମନେ କରାଯାଏ ଯେ ଏହି ଓଭରାପ୍ଟରଟି ଅଣ୍ଡା ଚୋରି କରୁ କରୁ ଧରାପଡ଼ି ମୃତ୍ୟୁବରଣ କରିଥିଲା। ମଙ୍ଗୋଲିଆର ଗୋବି ମରୁଭୂମି ପାଖରେ ଓଭିରାପ୍ଟର ଦେଖାଯାଉଥିଲେ।

ଅଳ୍ପଦିନ ତଳେ ମଙ୍ଗୋଲିଆରୁ ଗୋଟିଏ ଓଭିରାପ୍ଟରର ଜୀବାଶ୍ମ ମିଳିଥିଲା। ଏହାର ଲମ୍ବ ପ୍ରାୟ ସାଢ଼େ ନଅଫୁଟ। ଚଢ଼େଇଭଳି ଗୋଡ଼କୁ ଭାଙ୍ଗି ସେ ନିଜ ବସାରେ ଅଣ୍ଡା ଉଷୁମାଉଥିବାବେଳେ ଧୂଳିଝଡ଼ରେ ପୋତି ହୋଇପଡ଼ିଥିଲା। ତା' ବସାରେ ଥିଲା ୧୪ଟି ଅଣ୍ଡା। ଜନ୍ ହପ୍‌କିନସ ବିଶ୍ୱବିଦ୍ୟାଳୟର ବିଶେଷଜ୍ଞ ଡଃ ଡାଭିଡ୍ ୱିସାମ୍ପେଲ ଏବଂ ଆମେରିକାନ୍ ମ୍ୟୁଜିୟମ୍ ଅପ୍ ନାଚୁରାଲ ହିଷ୍ଟ୍ରିର ଡଃ ମୋରେଲ ଏହି ଓଭିରାପ୍ଟରର ଜୀବାଶ୍ମକୁ ଦେଖି ସାରି ଘୋଷଣା କରିଛନ୍ତି ଯେ ଏବକାଳର ପକ୍ଷୀକୂଳ, ଡାଇନୋସରମାନଙ୍କର ବଂଶଧର ବୋଲି କଳ୍ପନାଜଳ୍ପନା ଏବେ ସତ ବୋଲି ପ୍ରମାଣିତ ହୋଇପାରିବ।





# ଟ୍ରାଏ-ସେର୍-ଏ-ଟପ୍‌ସ

## (ତ୍ରିଶିଙ୍ଗ ମୁଖା)



କଥାରେ କହନ୍ତି, ''ବାଘ ଦେଖି ନ ଥିଲେ ବିଲେଇ ଦେଖ'' । ଅଶି ନିୟୁତ ବର୍ଷ ତଳେ 'ଟ୍ରାଏ-ସେର୍-ଏ-ଟପ୍‌ସ' ଡାଇନୋସରକୁ ତ କେହି ଦେଖି ନାହିଁ । ମାତ୍ର 'ଗଣ୍ଡା' ଦେଖିଲେ କଳ୍ପନା କରିହୁଏ ତା'ର ଆକୃତି ଓ ପ୍ରକୃତି ସମ୍ପର୍କରେ । ନାକ ଉପରେ ଶକ୍ତ ମାଂସଳ-ଶିଙ୍ଗଟିଏ ଥାଏ ଗଣ୍ଡାର । 'ଟ୍ରାଏ-ସେର୍-ଏ-ଟପ୍‌ସ'ର ନାକଦଣ୍ଡୀ ଉପରେ ଥିଲା ସେଇଭଳି ଶକ୍ତ ଶିଙ୍ଗଟିଏ । ଆଖିପତା ଉପରକୁ ପୁଣି ଆଉ ଦୁଇଟି ମୁନିଆ ଶିଙ୍ଗ । ମୁହଁରେ ତିନି ତିନିଟା ଶିଙ୍ଗ ଥିବାରୁ ତାକୁ 'ତ୍ରିଶିଙ୍ଗ-ମୁଖା' କୁହାଯାଏ ।

'ପୋରୁହାଁ ଶିଙ୍ଗା'ଠୁ 'ତ୍ରିଶିଙ୍ଗମୁଖା' କାହିଁ କେତେ ବଡ଼ । 'ପୋରୁହାଁଶିଙ୍ଗା'ର ଲମ୍ବ ମାତ୍ର ୧.୮ ମିଟର । 'ତ୍ରିଶିଙ୍ଗମୁଖା'ର ଲମ୍ବ ୯ ମିଟର ଓ ଓଜନ ୫ ଟନ୍ । ଓଜନଦାର ଜୀବଟିଏ ହେଲେ ବି ଦଉଡ଼ିବା ପାଇଁ ପାଦତଳେ ତା'ର ଖୁରା ଥିଲା । ଷଣ୍ଢ ବା ଗଣ୍ଡା ମାଡ଼ି ଆସି ଯେମିତି ଆକ୍ରମଣ କରନ୍ତି, 'ତ୍ରିଶିଙ୍ଗମୁଖା'ର ଆକ୍ରମଣ ଢଙ୍ଗଟି ଠିକ୍ ସେମିତି ।

ମୁହଁ ଅଗଟି ଶୁଆ ଥଣ୍ଟ ଭଳି ମୁନିଆ ଥିଲା । ତଳ ମାଡ଼ିରେ ଶକ୍ତ ଓ ଧାରୁଆ ଦାନ୍ତ ଶହ ଶହ ସଂଖ୍ୟାରେ ଥିଲା । ଟାଣୁଆ ଗଛଡାଳକୁ ଚିରି ବିଦାରି, ଟିକ୍‌ଟିକ୍ କରି ଖାଇବାରେ କିଛି ଅସୁବିଧା ହେଉ ନଥିଲା 'ତ୍ରିଶିଙ୍ଗମୁଖା'ର ।

ମୁଣ୍ଡଟି ଶକ୍ତ ହାଡ଼ରେ ତିଆରି ହୋଇଥିଲା । ଦେହ ତୁଳନାରେ ମୁଣ୍ଡଟା ଖୁବ ବଡ଼ । ତ୍ରିଶିଙ୍ଗମୁଖାର ମୁଣ୍ଡଟିର ଲମ୍ବ କେବଳ ୨ ମିଟର । 'ବୃଷଭଶିଙ୍ଗା'ର (ଟରୋସରସ) ମୁଣ୍ଡର ଲମ୍ବ ୨.୪ ମିଟର । ଏତେ ବଡ଼ ମୁଣ୍ଡକୁ ବେକ ହାଡ ଶକ୍ତ ଭାବେ ଜାବୁଡ଼ି ଧରିଥିଲା । ବେକକୁ ସୁରକ୍ଷିତ ରଖିବା ପାଇଁ ମାଂସଳ କମ୍ବଳଟିଏ ଶକ୍ତ ଢାଲ ଭଳି ବେକ ଉପରେ ଥିଲା । ଏହି କମ୍ବଳର ଧାରେ ଧାରେ ଶିଙ୍ଗମାଳ ମଧ ଥିଲା । ଏହିସବୁ ଶିଙ୍ଗସଜା ଭିନ୍ନ ଭିନ୍ନ । କମ୍ବଳଟି ଏହି ଡାଇନୋସରଟିକୁ ମାଂସାଶୀ ଡାଇନୋସରମାନଙ୍କ କବଳରୁ ରକ୍ଷା କରିପାରୁଥିଲା । କେହି କେହି ବୈଜ୍ଞାନିକ କହନ୍ତି ଯେ ଏହି କମ୍ବଳ ଭିତରେ ଅନେକ ରକ୍ତକୋଷ ଛାଇ ହୋଇ ରହିଥିଲା । ସୂର୍ଯ୍ୟକିରଣ ଆହରଣ ନିମନ୍ତେ ହୁଏତ ପ୍ରକୃତି ଏହି କମ୍ବଳ ସୃଷ୍ଟି କରିଥିଲା । ମାତ୍ର ଏହାକୁ ଏକ 'ଉଦ୍ଭଟ କଳ୍ପନା' କହି ଅନ୍ୟମାନେ ଅସ୍ୱୀକାର କରିଥାଆନ୍ତି । ଆତ୍ମରକ୍ଷା ପାଇଁ ଏହି ମାଂସଳ କମ୍ବଳଟି ଥିଲା ଅତି ଉପକାରୀ ।



'ଟୋରୋସରସ'କୁ **'ବୃଷଭଶିଙ୍ଗା'** ବୋଲି କହନ୍ତି । ଏହାର ମୁଖରେ ତିନିଟା ଶିଙ୍ଗ ଥିଲା, ମାତ୍ର ବେକର କମ୍ବଳ ଖୁବ ଲମ୍ବ ଥିଲା । କମ୍ବଳ ଉପରେ କୌଣସି ଶିଙ୍ଗ କି ଆବୁ ନ ଥିଲା ବୋଲି କୁହାଯାଏ ।



କମ୍ବଳ ଝାଡ଼ି, 'ତ୍ରିଶିଙ୍ଗମୁଖା' ଯେତେବେଳେ ଆକ୍ରମଣ କରିବାକୁ ଧାଇଁଯାଏ, ଶତ୍ରୁ ପ୍ରାଣ ବିକଳରେ ପଳାଇଯାଏ । ମାଟିତଳୁ ମିଳିଥିବା ଏହି ଜାତିର ଡାଇନୋସରମାନଙ୍କ ଖପୁରୀ ହାଡ କେତେକ ସ୍ଥାନରେ ଭାଙ୍ଗିଛି ବା ଅଧାଭଙ୍ଗା ରହିଛି । ତେଣୁ ଅନୁମାନ କରାଯାଏ ଏମାନେ ପରସ୍ପର ଭିତରେ ଲଢୁଥିଲେ ଓ ଶତ୍ରୁମାନଙ୍କ ସହ ପ୍ରବଳ ଲଢ଼େଇ କରୁଥିଲେ । ହିଂସ୍ର 'ଟିରାନୋସରସ ରେକ୍ସ' ଦଳେ 'ତ୍ରିଶିଙ୍ଗମୁଖା' ଦେଖିଲେ ଆକ୍ରମଣ କରିବାକୁ ସାହସ କରୁ ନଥିଲା । ବେଳେବେଳେ ଏମାନଙ୍କୁ ଆକ୍ରମଣ କରି 'ରେକ୍ସ' ବିଚରାର ପେଟ ଫାଟିଛି । ତେଣୁ ତ୍ରିଶିଙ୍ଗମୁଖାକୁ ଭାରି ଭୟ ।





ଆମ ସମୟରେ ଦେଖାଯାଉଥିବା ତ୍ରିଶିଙ୍ଗା ଏଣ୍ଟୁଅ ଏବେବି କ୍ୟୁବା ଅଞ୍ଚଳରେ ଦେଖାଯାଏ ।

'ଚାସମୋସରସ'ର ତିନି ଶିଙ୍ଗ ଥିଲା । ବେକରେ ଥିବା କମ୍ବଳଟି ଦୁଇ କୋଣିଆ । ପ୍ରତ୍ୟେକ କୋଣରେ ଦୁଇଟି କରି ଛୋଟ ଶିଙ୍ଗ ଥିଲା ।



'ଷ୍ଟାଇରାକୋସରସ'ର ନାକଦଣ୍ଡୀରେ ମାତ୍ର ଗୋଟିଏ ଶିଙ୍ଗ ଥିଲା । ବେକକୁ ଘୋଡେଇ ରଖିଥିବା ମାଂସଳ କମ୍ବଳଟି ଅର୍ଦ୍ଧବୃତ୍ତାକାର ଥିଲା ଓ ଏହାର କଡେ କଡେ ଶିଙ୍ଗମାଳ ଥିଲେ ବି ମଝିରେ ଛଅଟି ବଡ଼ ଶିଙ୍ଗ ରହିଥିଲା । ଏବର ଗଣ୍ଡାଚମ ଭଳି ଏହାର ଚମ ମୋଟା ଓ ଶକ୍ତ ଥିଲା ।







**'ସେଣ୍ଟ୍ରୋସରସ'**ର ଗୋଟିଏ ମାତ୍ର ଶିଙ୍ଗ ରହିଥିଲା ନାକଦଣ୍ଡୀ ଉପରେ । ଆଖିପିତା ବା ଭ୍ରୂଲତା ଉପରେ ଦୁଇଟି ଶକ୍ତ ଆବୁ ଥିଲା । ଏଇଟି ପ୍ରକୃତରେ 'ଏକଶିଙ୍ଗା' ଡାଇନୋସର ଥିଲା । କମ୍ବଳ ଚାରିକଡି ଶିଙ୍ଗମାଳ ଥିଲା। ଠିକ୍ ମଝିରେ, ଦୁଇଟି ବଡ଼ଶିଙ୍ଗ ଭିତର ଆଡ଼କୁ ବଙ୍କା ହୋଇ ରହିଥିଲା ।

**'ପେଣ୍ଟାସେର୍-ଏ-ଟପ୍ସ'**ର (ପଞ୍ଚଶିଙ୍ଗା) ବେକ କମ୍ବଳଟି ଠିକ୍ ଏକ ହାତପଙ୍ଖା ଭଳି ଦେଖାଯାଉଥିଲା । କମ୍ବଳ କଡେ କଡେ ଗଜୁରା ଗଜୁରା ଶିଙ୍ଗ ଥିଲା ।







# ଷ୍ଟେଗୋସରସ

## (ଛାତ କାତିଆ)

ଘୋଡ଼ାପୋକ ଦେଖିଲେ ଦିହ ଶୀତେଇ ଉଠେ । ଅସୁନ୍ଦରିଆ ସେ ପୋକଟା । 'ଷ୍ଟେଗୋସରସ' ସେମିତି ଏକ ଡାଇନୋସର । ଦେଖିବାକୁ ବିକୃତ ରୂପ । ଦିହର ଚମ ଆବୁ ଆବୁଆ । ଖୁବ୍ ଛୋଟ ମୁଣ୍ଡକୁ ବିଶାଳକାୟ ଦେହ । ବେକଠୁ ଲାଞ୍ଜଯାଏ ପାଞ୍ଚକୋଣିଆ କାତି ପିଠି ଉପରେ ଦି' ଧାଡ଼ିରେ ଠିଆ ରହୁଥିଲା । ଲାଞ୍ଜ ଆଗକୁ ଚାରିଟା ଝିଙ୍କକାଠି ଭଳି ଶିଙ୍ଗ । ପଛଗୋଡ଼ ଆଗଗୋଡ଼ଠୁ ଦିଗୁଣ ବଡ଼ । ହାଉଲେ ହାଉଲେ ଚାଲେ । ଠିଆ ହୋଇ ଗଛରୁ ପତ୍ର ଛିଣ୍ଡେଇ ଚୋବାଇଥାଏ ।

ଷ୍ଟେଗୋସରସ ବିକୃତ ବିହଙ୍ଗକଟୀ ଡାଇନୋସରଟିଏ । ସବୁଠୁ ବଡ଼ ଷ୍ଟେଗୋସରସର ଲମ୍ବ ୯ ମିଟର, ଉଚ୍ଚା ୩.୭ ମିଟର ଏବଂ ଓଜନ ୨ ଟନ୍ । ଜଂଘ ଗୋଡ଼ ନଳୀଗୋଡ଼ଠୁ ବଡ଼ ହୋଇଥିବାରୁ ଧାଇଁପାରେ ନାହିଁ । କଳନା କରାଯାଇଛି ଯେ ଦିନକୁ ସେ ତିନିଶହ କିଲୋଗ୍ରାମ୍ ଡାଳପତ୍ର ଖାଉଥିଲା । ପାଟି ଛୋଟକୁ, ଦାନ୍ତ ଦୁର୍ବଳ । ଅନବରତ ପତ୍ର ଚୋବାଉଥିଲା । ଦୁର୍ବଳ ଦାନ୍ତରେ ଘାସପତ୍ରକୁ ଚୋବେଇ ପିଠୋଉ କରିପାରୁ ନଥିବ ସେ ! ଗିଳି ପକେଇଲେ ହଜମ ହେଉଥିବ କେମିତି ? ଖଣ୍ଡ ଖଣ୍ଡ ଡାଳପତ୍ରକୁ ପଚେଇ ନରମ କରିପାରେ ବ୍ୟାକ୍ଟେରିଆ ବା ବୀଜାଣୁ । ହୁଏତ 'ଷ୍ଟେଗୋସରସ' ପାକାଶୟରେ ବହୁସଂଖ୍ୟାରେ ଏହି ବ୍ୟାକ୍ଟେରିଆ ରହି ଅଧାଚୋବା ତୃଣପତ୍ରକୁ ହଜମ କରାଇବାରେ ସହାୟତା କରୁଥିବ । କେତେକଙ୍କ ମତରେ ଅନ୍ୟାନ୍ୟ ଅତିକାୟ ଡାଇନୋସରଙ୍କ ଭଳି ସେ ମଧ୍ୟ ପଥର (ଗାଷ୍ଟ୍ରୋଲିଥ) ଗିଳୁଥିବ । ଏଇ ପଥର ଅଧାଚୋବା ଖାଦ୍ୟକୁ ପାକାଶୟର ପେଶୀ ଭିତରେ ପିଠୋଉ କରି ପକାଉଥିବ । ପିଠି ଉପରେ ଠିଆ ହୋଇଥିବା କାତିର ଲମ୍ବ ୭୫ ସେ.ମି । ଆମେରିକାର କଲୋରାଡ଼ୋ ଠାରେ ୧୮୭୭ରେ ଯେତେବେଳେ ଏହାର କଙ୍କାଳ ମିଳିଲା, କାଠଚଟୁ ଭଳି ଶକ୍ତ ଓ ମୋଟା ଛୋଟବଡ଼ କାତି ମଧ୍ୟ ସେଇଠାରୁ ମିଳିଥିଲା । ଏହିସବୁ କାତି ତା' ଦେହରେ କିଭଳି ହୋଇଥିବ, ସେ ନେଇ କଳ୍ପନା ହେଲା । ଆଗରୁ କୌଣସି ଡାଇନୋସରଙ୍କ କଙ୍କାଳ ସହ ଏଭଳି ବଡ଼ ବଡ଼ କାତି ମିଳି ନଥିଲା । ତେଣୁ କେତେକ କହିଲେ ଯେ ଏସବୁ କାତି ତା' ପିଠିକୁ ଘୋଡ଼େଇ ରଖିଥିଲା । ମାଂସାଶୀ ଡାଇନୋସର କବଳରୁ ରକ୍ଷାକରିବା ପାଇଁ ପ୍ରକୃତି ସୃଷ୍ଟିକଲା କାତି । ଏସବୁ କାତି ଛାତଭଳି ଘୋଡ଼ାଇ ରଖୁଥିବାରୁ ଏହି ଜାତିର ଡାଇନୋସରଙ୍କୁ 'ଛାତ କାତିଆ' ବା 'ଷ୍ଟେଗୋସରସ' ବୋଲି କୁହାଗଲା ।



ଗବେଷଣା କେବେ ସରେ ନାହିଁ । ଜ୍ଞାନର ଦ୍ୱାର ସବୁବେଳେ ଖୋଲା । ନୂଆ ନୂଆ ଭାବନା ଓ ଯୁକ୍ତି, ବିଜ୍ଞାନ ଜଗତର ନିତିଦିନିଆ କଥା । କେତେକ ବୈଜ୍ଞାନିକ କାତିଗୁଡ଼ିକୁ ଭଲଭାବେ ପରୀକ୍ଷା କରି ଦେଖିଲେ । ହୀରାଖଣ୍ଡ ଭଳି ପାଞ୍ଚକୋଣିଆ ଦେଖାଯାଉଥିବା କାତିଗୁଡ଼ିକରେ ଫେଣାଭଳି ରକ୍ତକୋଷ ରହିଛି । ତେଣୁ ଏସବୁ କାତି ଶରୀରର ଅତିରିକ୍ତ ଉଷ୍ଣତାକୁ ବିକୀରଣ କରୁଥିବ ଏବଂ ଶୀତଳ ସମୟରେ ସୂର୍ଯ୍ୟକିରଣରୁ

ଉତ୍ତାପ ସଂଗ୍ରହ କରୁଥାଇପାରେ ବୋଲି ବୈଜ୍ଞାନିକମାନେ କହିଲେ । କଙ୍କାଳ ସହ ଏହିସବୁ କାତି ଲାଗି ରହି ନଥିଲା । କେବଳ ଦେହର ଚର୍ମ ଓ ମାଂସ ସହ ସଂଯୁକ୍ତ ହୋଇ ପାଖୁଡ଼ାଭଳି ବୁଜି ହେଉଥିଲା ଓ ଖୋଲି ହେଉଥିଲା । ଏସବୁ ନଖ ଓ ଶିଙ୍ଗ ଭଳି କାର୍ଯ୍ୟ କରୁଥିବ ବୋଲି କେହି କେହି ବିଶ୍ୱାସ କଲେ ନାହିଁ । ତେବେ ଶରୀର ଉପରେ ଏଗୁଡ଼ିକ ଦୁଇଧାଡ଼ି ହୋଇ ସଜ୍ଜିତ ଥିଲା । ଖରାବେଳେ ଗରମ ଲାଗୁଥିଲେ କାତିଗୁଡ଼ିକୁ ସେ ବୁଜି ଦେଉଥିଲା ଓ ଥଣ୍ଡା ଲାଗିଲେ ମେଲେଇ ଉତ୍ତାପ ବା ଉଷ୍ମ ଟାଣୁଥିଲା ।


ଷ୍ଟେଗୋସରସ ଓ ଟିରାନୋସରସ ରେକ୍ସର ଲଢ଼େଇ

ନିଜର ପ୍ରତିରକ୍ଷା ପାଇଁ ଏହି କାତିସଜ୍ଜା ଚମତ୍କାର ଭାବେ ହୋଇଥିଲା । ଅନ୍ୟ ଡାଇନୋସରକୁ ଡରେଇବା ପାଇଁ ସେ କାତି ଠିଆ କରି ଦଉଥିଲା ଓ ପାରି ଦେଉଥିଲା । ଏହାଦ୍ୱାରା ଅନ୍ୟମାନେ ଭୟ ପାଉଥିଲେ । କେତେବେଳେ ଏଲୁସରସ ବା ଟିରାନୋସରସ ରେକ୍ସ ତାକୁ ଆକ୍ରମଣ କରୁଥିଲା । ଷ୍ଟେଗୋସରସ କାତି ଟେକି ଓ ଅଧା ମେଲେଇ ପଛ ଲାଞ୍ଜରେ ଥିବା ଶିଙ୍ଗରେ ପିଟି ତାକୁ ଲହୁଲୁହାଣ କରି ପକାଉଥିଲା । ଶକ୍ତ ଲାଞ୍ଜର ଚାବୁକମାଡ଼କୁ ମାଂସାଶୀ

## କେନ୍‌ଟ୍ରୋସରସ



୧୬୦ ନିୟୁତ ବର୍ଷ ତଳେ ଇଂଲଣ୍ଡ ଓ ଫ୍ରାନ୍ସ ଅଞ୍ଚଳରେ ଏହି ତୃଣଭୋଜୀ ଡାଇନୋସର ଦେଖାଯାଉଥିଲେ । ଝିଙ୍କକାଠି ଭଳି ଶକ୍ତ ଶିଙ୍ଗମାନ ବେକରୁ ପିଠିଯାଏ ଥିଲା ଏହାର ଲମ୍ବା ୧୫ ଫୁଟ ।

## ଲେକ୍ସୋଭିସରସ



୧୪୫ ନିୟୁତ ବର୍ଷତଳେ ତାଞ୍ଜାନିଆ ଅଞ୍ଚଳରେ ଏହି ଜାତୀୟ ଡାଇନୋସର ଦେଖାଯାଉଥିଲେ । ପିଠିରେ ଠିଆ କାତି । ଲମ୍ବ ୧୬ ଫୁଟ । ସେ ଥିଲା ତୃଣଭୋଜି ।



ଡାଇନୋସରମାନେ ଭୟ କରୁଥିଲେ । ନିହାତି ଭୋକ ନ ଥିଲେ ବା, ଶିକାର ଅଭାବ ହେଉ ନଥିଲେ ମାଂସାଶୀ ଡାଇନୋସରମାନେ ଷ୍ଟେଗୋସରସକୁ ଆକ୍ରମଣ ନ କରି ବାଟକାଟି ଚାଲିଯାଉଥିଲେ । ଷ୍ଟେଗୋସରସ ତାହା ହିଁ ଚାହୁଁଥିଲା । ଶାନ୍ତିରେ ତାଳପତ୍ର ଖାଇପାରିବ ବୋଲି ପ୍ରକୃତି, ଏସବୁ କାତି ଓ ଶିଙ୍ଗରେ ତାକୁ ସଜେଇ ଦେଇଥିଲା । ସହଜେ ତ ଧୀର ଚାଲି, ଥାକୁଲା ଡାଇନୋସରଟାଏ । ସେ ତା' ଆଡୁ କେବେ କାହାକୁ ଗୋଡ଼ାଇ ମାରେ ନାହିଁ ।

ଆହୁରି ବିଚିତ୍ର କଥା ହେଉଛି ଯେ ଏହାର ମସ୍ତିଷ୍କ ଗୋଟିଏ ବିଲେଇ ଛୁଆର ମସ୍ତିଷ୍କଠାରୁ ବି ବଡ଼ ନୁହେଁ । ଦୁଇଟନ୍ ଓଜନର ଏଡ଼େବଡ଼ ଦେହ ପାଇଁ ଯେଉଁ ମସ୍ତିଷ୍କଟି ଖପୁରୀ ଭିତରେ ଥିଲା



କୃତ୍ରିମ ଉପଗ୍ରହର ଦୁଇଟି ଡେଣା ମେଲେଇ ହୋଇ ରହିଥାଏ ସୂର୍ଯ୍ୟକିରଣରୁ ଶକ୍ତି ଗ୍ରହଣ କରିବାପାଇଁ

ତା'ର ଓଜନ ଅଶୀ ଗ୍ରାମରୁ ବେଶି ହେବନାହିଁ । ଏଡ଼େ ବଡ଼ ବିଶାଳ ଦେହକୁ ତେବେ କ'ଣ ଏଇ ଛୋଟ ମସ୍ତିଷ୍କଟି ନିୟନ୍ତ୍ରଣ କରିପାରୁଥିଲା ? ଆଉ କେତେକ ବୈଜ୍ଞାନିକ କହନ୍ତି, ପଛଗୋଡ଼ ଉପରେ ଅଣ୍ଟା ପାଖକୁ କୁଜଭଳି ସ୍ନାୟୁକେନ୍ଦ୍ରଟିଏ ଥିଲା । ଏହା ମସ୍ତିଷ୍କର ଆକାରଠାରୁ ୨୦ ଗୁଣ ବଡ଼ । ଏହାକୁ ଷ୍ଟେଗୋସରସର ଦ୍ୱିତୀୟ ମସ୍ତିଷ୍କ ବୋଲି କୁହାଯାଏ । କାରଣ ପଛଗୋଡ଼ ଓ ଲାଞ୍ଜକୁ ଏହି ସ୍ନାୟୁକେନ୍ଦ୍ରଟି ନିୟନ୍ତ୍ରଣ କରୁଥିଲା । ପ୍ରକୃତିର ବିଚିତ୍ର କଥାସବୁ କହି ବସିଲେ ସରେ ନାହିଁ । ସମସ୍ତେ ଜାଣନ୍ତି ଫଳ ଭିତରେ ମଞ୍ଜି ଥାଏ । ମାତ୍ର କାଜୁଫଳର ବାହାରେ ଥାଏ ମଞ୍ଜି । ଏ କାଳରେ ଫୁଲ ଫୁଟିଲେ ଫଳ ହୁଏ । ଡାଇନୋସର ଯୁଗରେ ଫୁଲ ନଥିଲା । ମାତ୍ର ଗଛରେ ଫଳ ଧରୁଥିଲା । ଷ୍ଟେଗୋସରସର ଅଣ୍ଟାଠି ଆଉ ଗୋଟିଏ ମସ୍ତିଷ୍କ କଥା ତେଣୁ ବିଚିତ୍ର ନୁହେଁ ।

୧୭୦ ନିୟୁତ ବର୍ଷ ତଳେ ମଧ୍ୟ ଜୁରାସିକ ସମୟରେ ଉତ୍ତର ଆମେରିକା, ଆଫ୍ରିକା, ୟୁରୋପ ଏବଂ ଏସିଆର ବିଭିନ୍ନ ଅଞ୍ଚଳରେ ଷ୍ଟେଗୋସରସ ଦେଖାଯାଉଥିଲେ । ପ୍ରାକ୍ କ୍ରେଟାସିଅସ ଯୁଗରେ ଏମାନଙ୍କର ବିଲୟ ଘଟିଲା । ପୃଥିବୀ ପୃଷ୍ଠରେ ଏମାନେ ୧୦ ନିୟୁତ ବର୍ଷ ଯାଏ ବଞ୍ଚି ରହିଥିଲେ ।





ଉପଗ୍ରହର ଡେଣା ଭଳି ଷ୍ଟେଗୋସରସ ପିଠି ଉପରେ କାତି ମେଲାଏ ସୂର୍ଯ୍ୟ କିରଣରୁ ଉତ୍ତାପ ଗ୍ରହଣ କରିବାପାଇଁ । ସକାଳବେଳା ସେ କାତି ମେଲାଏ... ଓ ଦ୍ୱିପହରରେ କାତିକୁ ଟେକିରଖେ । ଲଢ଼େଇବେଳେ ଭୟ ସୃଷ୍ଟି ପାଇଁ ସେ କାତି ଖୋଲି ଦିଏ ।



# ଆଓ୍ୱାରାନୋସରସ

## (ପିଠି ଚୂଳିଆ)

କୁକୁଡ଼ା ମୁଣ୍ଡରେ ନାଲି ଟୁକ୍ ଟୁକ୍ ଚୂଳ, ଗାଈ ବେକ ତଳେ ମାଂସଳ କମ୍ବଳ, କୁଲାଭଳି ହାତୀକାନ ଓ ପକ୍ଷୀର ଡେଣା କେଡ଼େ କୌତୁକ ଲାଗେ ! ଏ ସବୁକୁ ସମୟ କ୍ରମେ ପ୍ରକୃତି କେତେବେଳେ ଗଢ଼ିଦେଇଛି କେହି ଜାଣେ ନାହିଁ । ଗହଳ ବଣରେ ପତ୍ର ଓ ଡାଳ ଖାଉଥିଲା ଡାଇନୋସର । ଖାଇବା ହୁଏତ ଏକମାତ୍ର କଥା ଥିଲା.......ତେଣୁ ସେତେବେଳେ ସେମାନଙ୍କର ଦେହ ଥିଲା ଚିକ୍କଣ ଓ ବିଶାଳକାୟ । ବାୟୁମଣ୍ଡଳ ବଦଳିଗଲା....; ଆକୃତି ଓ ପ୍ରକୃତି ବଦଳିଗଲା । ଡାଇନୋସରମାନେ କଳିକଲେ.....ଆତ୍ମରକ୍ଷାର ଆବଶ୍ୟକତା ପଡ଼ିଲା । ପିଠି ଆବୁଆବୁଆ ହୋଇଗଲା । ନାକଦଣ୍ଡୀ ଉପରେ ଓ ମୁଣ୍ଡ ଉପରେ ଶିଙ୍ଗ ଗଜୁରି ଉଠିଲା । ଶିଙ୍ଗକୁ ଘେରି ରହିଲା ମାଂସଳ କମ୍ବଳ । ଠିକ୍ ତରବାରୀ ସାଙ୍ଗକୁ ଢ଼ାଲ ଭଳି । ''ପୋରୁହାଁ ଶିଙ୍ଗା'' ଓ ''ତ୍ରିଶିଙ୍ଗମୁଖା'' ଅନ୍ୟ ଡାଇନୋସର ମାନଙ୍କଠାରୁ ଟିକିଏ ବ୍ୟତକ୍ରମ ହୋଇ ପୃଥିବୀକୁ ଆସିଲେ । ଶିଙ୍ଗ ଓ ବେକ-କମ୍ବଳ ଆସିଗଲା ।

ବାୟୁମଣ୍ଡଳ କେତେବେଳେ ଥଣ୍ଡା ହେଲା, କେତେବେଳେ ତତଲା ଓ ଶୁଖିଲା ବି ହୋଇଗଲା ।

ଶକ୍ତି ଯୋଗୁଁ ଜୀବନ ଅଛି । ଶକ୍ତି ମିଳେ ସୂର୍ଯ୍ୟକିରଣରୁ । ସୂର୍ଯ୍ୟ ସକଳ ଶକ୍ତିର ଆଧାର । ସୂର୍ଯ୍ୟକିରଣରୁ ଶକ୍ତି ସଂଗ୍ରହ ପାଇଁ 'ଛାତକାତିଆ' ଡାଇନୋସରର ପିଠିରେ ରହିଲା ବଡ଼ ବଡ଼ କାଠଫାଳିଆ ଭଳି କାତି । ଦେହ ଭିତରେ ପାକକ୍ରିୟା ଚାଲେ । ଉତ୍ତାପ ରହେ । ଅଧିକ ଉତ୍ତାପ ହେଲେ ଜ୍ୱର ହୁଏ, ଉତ୍ତାପ କମିଗଲେ ଦିହ ଶୀତଳ ପଡ଼ିଯାଏ । ଶରୀର ରକ୍ଷା ପାଇଁ ଦେହ ଭିତରେ ଉତ୍ତାପ, ଆବଶ୍ୟକତା ଅନୁଯାୟୀ ରହିବା ଉଚିତ । ବାୟୁମଣ୍ଡଳ ଘନ ଘନ ବଦଳିବାରୁ, ପ୍ରକୃତି ଡାଇନୋସରର ଗୋଟାଏ ନୂଆ ଜାତି ଗଢ଼ିଦେଲା । ସେମାନେ ହେଲେ 'ଷ୍ଟେଗୋସରସ' । ଫ୍ରାନ୍ସ ଅଞ୍ଚଳରେ ଏହି ଜାତିର ଡାଇନୋସରଙ୍କୁ କୁହାଗଲା ''ଲେକ୍ସୋଭିସରସ'' । ୧୪୫ରୁ ୧୬୦ ନିୟୁତ ବର୍ଷ ତଳେ ଏସବୁ ଡାଇନୋସର ଦେଖାଗଲେ । ପିଠି ଉପରେ କାତି ଓ କଣ୍ଟା ରହିଲା । ସୂର୍ଯ୍ୟକିରଣରୁ ଶକ୍ତି ଆହରଣ କଲା ଚଟକା ପ୍ଲେଟଭଳି କାତି । ଆତ୍ମରକ୍ଷା ପାଇଁ ପିଠିଠୁ ଲାଞ୍ଜଯାଏ ରହିଲା କଣ୍ଟା, ଠିକ୍ ଝିଙ୍କ ଭଳି ।





୧୧୦ ନିୟୁତ ବର୍ଷ ତଳେ ବାୟୁମଣ୍ଡଳ ଖୁବ୍ ତତଲା ଓ ଶୁଖିଲା ହୋଇଗଲା । ହ୍ରଦ, ପାଟ ଓ ଜଳାଶୟ ସବୁ ଶୁଖିଗଲା । ମରୁଭୂମିରେ ଓଟ ରହୁଥିବାରୁ ପିଠିରେ ତା'ର ଚୂଳ ରହିଲା । ଚୂଳରେ ଚର୍ବି ଓ ପାଣି ରହିଲା । ତେଣୁ ଓଟ ଅନେକ ଦିନ ଧରି କିଛି ନ ଖାଇ ନ ପିଇ ମରୁଭୂମିର ଧୂ ଧୂ ତତଲା ବାଲିରେ ମାଇଲ ମାଇଲ ଚାଲି ଯାଇପାରେ ।

ପଶ୍ଚିମ ଆଫ୍ରିକା ଅଞ୍ଚଳରେ ପତ୍ର ଖାଉଥିବା ଡାଇନୋସରମାନଙ୍କ ପାଇଁ ପ୍ରକୃତି କାନ୍ଧଠାରୁ ଲାଞ୍ଜଯାଏ କୁଞ୍ଚକୁଞ୍ଚିଆ ମୋଟା ମାଂସଳ ଚୂଳ ଖଞ୍ଜି ଦେଇଥିଲା । ପାଣି ଭିତରେ ଗୋଟିଏ ଜାତିର ମାଛ ଥାଆନ୍ତି । ସେମାନଙ୍କ ପିଠିରେ ବଡ଼ ପକ୍ଷଟିଏ ଥାଏ । ଏମାନଙ୍କୁ କୁହାଯାଏ 'ପହଁରାମାଛ'(Sail Fish) । ଏଇ ମାଛର ଡେଣା ବା ପକ୍ଷ ଭଳି ଡାଇନୋସରର ପିଠିରେ ଏକ ଅତିକାୟ ପକ୍ଷ ବା ଚୂଳ ରହୁଥିଲା । ସେମାନଙ୍କର ନାଆଁ ହେଲା ''ଆଓ୍ୱାରାନୋସରସ'' । କେତେକ ବିଶେଷଜ୍ଞ ମନେକରନ୍ତି ଯେ ଏହି ଚୂଳଟିରେ ଅନେକ ରକ୍ତକୋଷ ରହିଥିଲା ଓ ଏହା ତାପ ବିନିମୟରେ ସାହାଯ୍ୟ କରୁଥିଲା । ଡାଇନୋସରର ଦେହରୁ ଅଧିକ ଉତ୍ତାପକୁ ବାୟୁମଣ୍ଡଳକୁ ଛାଡ଼ିଦେଉଥିଲା ଓ ହାଲ୍‌କା ସମୟରେ ବାୟୁରୁ ଉଷ୍ମ ଟାଣୁଥିଲା ଅଥବା ଦେହ ଆବଶ୍ୟକ କରୁଥିବା ବେଳେ ଉତ୍ତାପ ଯୋଗେଇ ଦେଉଥିଲା ।



କାନ୍ଧଠୁ ଲାଞ୍ଜଯାଏ ଥିବା ଏହି ଚୂଳଟି ତାକୁ ସୁନ୍ଦର କରିଥିଲା ଓ ଏକ ରାଜକୀୟ ଠାଣି ଦେଇଥିଲା । 'ଆଓ୍ୱାରାନୋସରସ'ର ଲମ୍ବ ଥିଲା ୨୩ ଫୁଟ । ସେ ଥିଲା ଶାନ୍ତ ସୁଧାର ଡାଇନୋସରଟିଏ । ମାତ୍ର ଏହିଭଳି ୩୯ଫୁଟ ଲମ୍ବର ଅନ୍ୟ ଏକ ଡାଇନୋସର ଥିଲା ମାଂସାଶୀ । ତାକୁ କୁହାଯାଉଥିଲା



ମାଂସାଶୀ 'ଏଲୁସରସ' ଭଳି ହିଂସ୍ର ଡାଇନୋସରକୁ ସେ କ୍ଷତବିକ୍ଷତ କରିପାରୁଥିଲା । ଉଭୟ 'ପିଠିଚୂଳିଆ ଡାଇନୋସର' ଦ୍ୱିପଦୀ ଥିଲେ । ଆଗ ଗୋଡ଼ ଦୁଇଟି ଛୋଟ ଥିଲା । କେବଳ ବିଶ୍ରାମ ନେବାବେଳେ ଏହି ଛୋଟ ଗୋଡ଼ ଦୁଇଟି ମାଟି ଉପରେ ଭରା ଦେବାପାଇଁ ବ୍ୟବହୃତ ହେଉଥିଲା ।

ଜୁରାସିକ ଓ କ୍ରେଟାସିୟସ ଯୁଗରେ ଡାଇନୋସରମାନେ ବହୁସଂଖ୍ୟାରେ ଦେଖାଯାଉଥିଲେ । ମାତ୍ର ତା'ର ବହୁପୂର୍ବରୁ କାର୍ବୋନିଫେରସ ଯୁଗରେ 'ଡିମେଟ୍ରୋଡନ' ଜାତିର ସରୀସୃପଙ୍କର ପିଠିରେ ଅତିକାୟ ଚୂଳ ଥିଲା । ମାତ୍ର ଏହି 'ଡିମେଟ୍ରୋଡନ' 'ଆଓ୍ୱାରାନୋସରସ' ଓ 'ସ୍ପିନୋସରସ'ଙ୍କର ପୂର୍ବଜ ନ ଥିଲା । ଅତିକାୟ ଚୂଳଥିବା ଡାଇନୋସର ଓ ତା'ର ତାପ ସଂରକ୍ଷଣ ଓ ବିନିମୟ ବ୍ୟବସ୍ଥା ଏବେ ବି କୌତୁହଳ ସୃଷ୍ଟିକରେ ।



# ଆନ୍-କିଲ-ଉ-ସରସ

## (ପଲମ ପିଠିଆ)



ପୃଥିବୀକୁ ଡାଇନୋସରମାନେ ଆସିବାବେଳେ ଭରପୂର ଜଙ୍ଗଲ ଥିଲା । ଅଗଭୀର ସମୁଦ୍ରରେ ଲୋହିତ ଶିଉଳି ଥିଲା । ତୃଣ-ପତ୍ର-ଶିଉଳି ଯାହାକୁ ଯେତେ । କଥାରେ କହନ୍ତି-ଖାଇ ବସିଲେ ନଈବାଲି ସରେ । ଖାଉ ଖାଉ ଡାଇନୋସରମାନେ ଏତେ ଖାଇଲେ ଯେ ସେମାନେ କେଦା ହୋଇଗଲେ; ଖାଦ୍ୟ ନିଅଣ୍ଟ ହେଲା । ଖାଇବା ପାଇଁ କଳି ହେଲା । କଳିରୁ ମୁଥ ମରାମରି । ମୁଥ ମରାମରିରୁ ପିଠି ଆବୁଆବୁଆ ହେଲା । କାମୁଡ଼ାକାମୁଡ଼ି ହେବାରୁ ଦାନ୍ତ ଓ ନଖ ଶକ୍ତ ଓ ମୁନିଆ ହେଲା । କିଛି ଡାଇନୋସରଙ୍କୁ ମାଂସ ଭଲ ଲାଗିଲା...ସେମାନେ ମାଂସାଶୀ ଡାଇନୋସର ବୋଲି ପରିଚିତ ହେଲେ । 'ଏଲୁସରସ', 'ଟରବୋସରସ', 'ସେରାଟୋସରସ' ଓ 'ଟିରାନୋସରସ ରେକ୍ସ'ମାନେ ମାଂସାଶୀ



ଡାଇନୋସର । ଏମାନେ ଉତ୍ପାତ ଆରମ୍ଭ କଲେ । ନିରୀହ ତୃଣଭୋଜି ଡାଇନୋସରଙ୍କୁ ମାରି ଖାଇଲେ । ସେମାନଙ୍କ ସହ ଲଢ଼େଇ କରିବା ପାଇଁ, ଆକ୍ରମଣରୁ ରକ୍ଷା ପାଇବା ପାଇଁ ପ୍ରକୃତି ସେମାନଙ୍କୁ ଶିଙ୍ଗ ଦେଲା, ବେକକୁ ଶକ୍ତ ମାଂସଳ କମ୍ବଳରେ ଘୋଡ଼େଇ ଦେଲା । ପିଠିରେ ଶକ୍ତ କାତି ସବୁ ଖଞ୍ଜିଦେଲା । ମାଂସାଶୀ ଡାଇନୋସରମାନେ ହଠାତ୍ କିଛି କ୍ଷତି କରିପାରିଲେ ନାହିଁ । ପ୍ରକୃତିର ବରାଭୟ ପାଇଥିବା ଡାଇନୋରସମାନେ ହେଲେ 'ଟ୍ରାଏସେରେଟପ୍‌ସ' (ତ୍ରିଶିଙ୍ଗା) ଓ 'ଷ୍ଟେଗୋସରସ' (ଠିଆ କାତିଆ) ।

ସମୟ ବହି ଚାଲିଥାଏ । ଜୁରାସିକ ଯୁଗ ସରିଗଲାଣି ଓ କ୍ରେଟାସିୟସ ଯୁଗ ଆରମ୍ଭ ହୋଇଯାଇଥାଏ । ସେ ଯୁଗରେ ଏମିତି କିଛି ଡାଇନୋସର ଥିଲେ ଯେ ସେମାନଙ୍କୁ ଏବେ ଦେଖିଲେ ଦେହ ଶୀତେଇ ଉଠିବ । କଦାକାର ଓ କୁତ୍ସିତ ଡାଇନୋସରଟିଏ 'ଆନ୍-କିଲ-ଉ-ସରସ' । ମୁଣ୍ଡଠୁ ଲାଞ୍ଜଯାଏ ବଡ଼ ବଡ଼ ହାଡୁଆ କାତି ଓ କଣ୍ଟା । ଆତ୍ମରକ୍ଷା ପାଇଁ ସତେ ଯେମିତି ପ୍ରକୃତି ତାକୁ କବଚ ପିନ୍ଧେଇ ଦେଇଥିଲା ।

ବଜ୍ରକାପ୍ତା, କଇଁଛ ଓ ଝିଙ୍କ ତିନିହେଁ ମିଶିଗଲେ ଯାଇ 'ଆନ୍-କିଲ-ଉ-ସରସ' ହେବ । ପିଠାକୁ ବୋଉ ପଲମରେ ଘୋଡ଼ାଇ ରଖେ । ପ୍ରକୃତି ସେମିତି କଇଁଛ ପିଠି ଭଳି ଗୋଟାଏ ପଲମରେ 'ଆନ୍-କିଲ-ଉସରସ'କୁ ଘୋଡ଼େଇ ଦେଇଥିଲା । ବଜ୍ରକପ୍ତା ଭଳି ପିଠିସାରା ତା'ର ଥାକ ଥାକ କାତିହାଡ଼ । ସାଞ୍ଜୁ ଭଳି କାତିସବୁ ପାରିହୋଇ ରହିଥିଲା । ଝିଙ୍କଭଳି କଣ୍ଟା ଏଠି ସେଠି ବାହାରିଥିଲା । ପଲମ ପିଠିର କଡ଼େ କଡ଼େ କଣ୍ଟା ଥିଲା । ମସ୍ତିଷ୍କ ଥିବା ଜାଗାଟି ଶକ୍ତ ଖପୁରୀରେ ଆବୃତ୍ତ ଥିଲା । ବେକ ଓ ମୁଣ୍ଡକୁ ଥାକ ଥାକ ଶକ୍ତକାତି ଘୋଡ଼େଇ ରଖିଥିଲା । ମାଂସାଶୀ



ଡାଇନୋସର ତା' ଆଡ଼କୁ ଆସିବା ଦେଖିଲେ ସେ ଚୁପଚାପ ବସି ପଡୁଥିଲା । ଖୁମ୍ବଭଳି ମୋଟା ଗୋଡ଼ ଓ ଶକ୍ତ ପଂଝାରେ ମାଟିକୁ ଆମ୍ପୁଡ଼ି ଧରୁଥିଲା । ସହଜରେ ଯେମିତି ତାକୁ ମାଂସାଶୀ ଡାଇନୋସର ଓଲଟାଇ ନ ପକାଏ । ସୁବିଧା ଦେଖି ହଠାତ୍ 'ଆନ୍-କିଲ-ଉ-ସରସ' ତା ଲାଞ୍ଜରେ ପିଟି ପକାଏ ଆକ୍ରମଣକାରୀକୁ । ଲାଞ୍ଜ ଶେଷକୁ ଖୁବ୍ ଶକ୍ତ ହାଡ଼ପିଣ୍ଡୁଳା ଥିଲା । ମାଡ଼ରେ 'ଏଲୁସରସ', 'ଟରବୋସରସ'ର ମୁଣ୍ଡ ଫାଟିଯାଉଥିଲା, ଜଂଘ ଓ ପିଠି ସିଝି ଯାଉଥିଲା । ଦିହରୁ ପରାସ ଯାଉ ନଥିଲା । 'ଆନ୍-କିଲ-ଉ ସରସ'ର ଭୀମ-ପାହାରକୁ ଡରି ମାଂସାଶୀ ଡାଇନୋସରମାନେ ବାଟ ଭାଙ୍ଗି ଚାଲିଯାଉଥିଲେ ।

'ଆନ୍-କିଲ-ଉ-ସରସ' ବା ପଲମ ପିଠିଆ ଡାଇନୋସରର ଲମ୍ବ ଥିଲା ୧୦ମିଟର, ଓସାର ୧.୮ ମିଟର ଏବଂ ଉଚ୍ଚତା ୧.୫ ମିଟର । ଓଜନ ଥିଲା ପାଞ୍ଚ ଟନ୍ । ପଛଗୋଡ଼ଠୁ ଆଗଗୋଡ଼ ଛୋଟ ଥିଲା । ମାତ୍ର 'ଷ୍ଟେଗୋସରସ' ଭଳି ଅତି ଛୋଟ ନ ଥିଲା । ଗୋଡ଼ ଚାରୋଟି ଶକ୍ତ ଓ ଖୁମ୍ବପରି । ଯୁଦ୍ଧ ଭୂଇଁରେ ବୈଜୟନ୍ତୀ ଟ୍ୟାଙ୍କ୍‌ଭଳି ଟାଙ୍ଗର ଭୂଇଁରେ ସେ ଯୁଆଡ଼େ ଇଚ୍ଛା ସିଆଡ଼େ ଯାଇପାରୁଥିଲା ।



ଦାନ୍ତ ସେଭଳି ଶକ୍ତ ନଥିବାରୁ ସେ ଧୀରେ ଧୀରେ ଚୋବେଇ ଖାଉଥିଲା । କେତେକଙ୍କ ମତରେ ସେ ଛୋଟ ଛୋଟ ପୋକ ଜୋକ ମଧ୍ୟ ଖାଉଥିଲା । କୁହାଯାଏ ପିମ୍ପୁଡ଼ି ଖାଇବାକୁ ସେ ଖୁବ୍ ପସନ୍ଦ କରୁଥିଲା ।

ସନ୍ତସନ୍ତିଆ ମାଟି, ଦଳ ପୋଖରୀଆଡ଼େ ସେ ଆଦୌ ଯାଉ ନଥିଲା । କାରଣ ପାଣିରେ ପଡ଼ିଗଲେ ସେ ପହଁରି ପାରୁ ନଥିଲା । କାରଣ ତା'ଦେହଟି ଏତେ ନିଦା ଓ ଓଜନିଆ ଥିଲା ଯେ ପାଣିରେ ପଡ଼ିଗଲେ ସେ ବୁଡ଼ି ମରୁଥିଲା । ବଜ୍ରକାପ୍ତା ବା ଆର୍ମାଡିଲୋ ଭଳି ସେ ପହଁରି ପାରୁ ନଥିଲା ।

'ଆନ୍-କିଲ-ଉ-ସରସ'ର ପିଠି ବଙ୍କା ଥିବାରୁ ଏହାର ଆବିଷ୍କାରକ ଏହାକୁ ବଙ୍କାପିଠିଆ ବା ବକ୍ରଗୋଧି ବୋଲି ନାଆଁ ଦେଇଥିଲେ । ଆମ ଭାଷାରେ ବୁଝିବାପାଇଁ ଏହାକୁ ଆମେ 'ପଲମ-ପିଠିଆ' ବୋଲି କହିବା ।



ଉତ୍ତର ଆମେରିକାର 'ଉଇପ୍ଲୋସେଫାଲସ' ଏକ ବିରାଟକାୟ ଆନ୍-କିଲ-ଉ-ସରସ । ଏସିଆର 'ଟାଲାରୁରସ' ମଧ୍ୟ ଏହି ଜାତୀୟ ଡାଇନୋସର । ଏମାନଙ୍କର ଲାଞ୍ଜ ଅଗରେ ହାଡ଼ପିଣ୍ଡୁଳା ଭଳି ଗଦା ଥିଲା । ଏମାନଙ୍କୁ ଦେଖିଲେ ଯେ କେହି କହିବ ଏମାନେ ଥିଲେ 'ସାଞ୍ଜୁଆ-ଡାଇନୋସର' ।



## ଆଉ କେତୋଟି
# ସାଞ୍ଜୁଆ ଡାଇନୋସର



ମାଆର ସବୁ ପିଲା ଶାନ୍ତ-ସୁଧାର ହୁଅନ୍ତି ନାହିଁ । ଦୁଷ୍ଟ ପିଲାକୁ ସଭିଙ୍କର ଡର । ଡାଇନୋସରର ଦୁନିଆରେ କିଛି ଦୁଷ୍ଟ ଡାଇନୋସର ଅନ୍ୟ ଡାଇନୋସରମାନଙ୍କୁ ମାରି ପକେଇଲେ, ଗଛପତ୍ର ନ ଖାଇ ମାଂସ ଖାଇଲେ । ଶାନ୍ତ-ସୁଧାର ଡାଇନୋସରମାନେ ଏଇ ଦୁଷ୍ଟ ଡାଇନୋସରମାନଙ୍କ କବଳରୁ ରକ୍ଷା ପାଇବେ କିପରି ? ପ୍ରକୃତିକୁ ମାଆ ବୋଲି କୁହାଯାଏ । ଏଇ ପ୍ରକୃତି ନିରୀହ ଓ ସରଳ ଡାଇନୋସରମାନଙ୍କ ପାଇଁ ରକ୍ଷାକବଚ କଥା ଭାବିପାରେ । ବୈଜ୍ଞାନିକମାନେ ପରୀକ୍ଷା ନିରୀକ୍ଷା କଲାଭଳି ପ୍ରକୃତି କିଛି ନିରୀହ ଡାଇନୋସରମାନଙ୍କୁ ହିଂସା ଓ ଆକ୍ରମଣରୁ ରକ୍ଷା କରିବାପାଇଁ ପରୀକ୍ଷା ହୁଏତ ଆରମ୍ଭ କରିଦେଲା । ଜୁରାସିକ ଯୁଗରେ ଷ୍ଟେଗୋସରସ ଭଳି ଏକ ବିଚିତ୍ର ଡାଇନୋସର ସୃଷ୍ଟି ହେଲେ । ସେ ଯୁଗ ସରି ଆସିବା ବେଳକୁ ଏହି ଠିଆକାଟିଆ ଡାଇନୋସରମାନେ କ୍ରମେ ବିଲୁପ୍ତ ହୋଇଗଲେ ।

କ୍ରୋଟାସିୟସ ଯୁଗ ଆରମ୍ଭ ହେଲା । ସେ ଯୁଗରେ ଜଳବାୟୁ ଥିଲା ଶାନ୍ତ । ଠିକଣା ସମୟରେ ଖରା, ବର୍ଷା, ଶୀତ, ବସନ୍ତ ଋତୁ ଆସୁଥିଲା । ଡିମିରି, ଝାଉଁ, ମଙ୍ଗୋଲିଆ ଜାତିର ନୂଆଗଛ ସବୁ ଜନ୍ମ ନେଲେ । ନୂଆ ନୂଆ କୀଟପତଙ୍ଗ ପୃଥିବୀରେ ଦେଖାଦେଲେ । ଫୁଲମାନଙ୍କରେ ମକରନ୍ଦ ବା ମହୁ ରହିଲା । ସମୟ ଓ ପରିବେଶ ବଦଳିବାରୁ ଏଇ କ୍ରୋଟାସିୟସ ଯୁଗରେ ନୂଆ ଜାତିର ଡାଇନୋସର ଦେଖାଦେଲେ । ଏମାନେ ଗେଡ଼ା ଓ ଓଜନଦାର ଗୋଧି ଜାତିର । କଇଁଛର ପିଠି ଶକ୍ତ ଏକ ଖୋଳପାରେ ସୁରକ୍ଷିତ ରହିଲାଭଳି, ଶକ୍ତ କାତିମାନଙ୍କୁ ଥାକ ଥାକ କରି ସୁନ୍ଦର ଭାବେ ସଜେଇ ଏକ ପ୍ରତିରକ୍ଷାର ଆବରଣରେ ପ୍ରକୃତି ଏମାନଙ୍କୁ

## ଆନ୍-କିଲ-ଉ-ସରସର ନୂଆ ନାଆଁ ଜୁରାସୋସରସ

ମାଇକେଲ କ୍ରିକ୍ଟନଙ୍କ ଲୋକପ୍ରିୟ ଜୁରାସିକ ପାର୍କ ସିନେମା, ସାରା ପୃଥିବୀରେ ଚହଳ ପକାଇ ସାରିଛି । ପିଲା-ବୁଢ଼ା, କର୍ମଜୀବୀ, ସମସ୍ତେ ଡାଇନୋସରର କଥା ଜାଣିବାକୁ ଆଗ୍ରହୀ । ଆମ ଭାରତବର୍ଷର ବିଭିନ୍ନ ସହରରେ 'ଡାଇନୋସର-ସୋ' ଖୁବ୍ ଲୋକପ୍ରିୟ ହୋଇଛି ।

'ଜୁରାସିକପାର୍କ' ସିନେମାର ନିର୍ମାତା ସ୍ପିଲବର୍ଗ ଯେଉଁ ପ୍ରଚୁର ଅର୍ଥ ପାଇଛନ୍ତି, ସେଥିରୁ ୨୫୦୦୦ ଡଲାର ମୁଦ୍ରା ଗୋଟିଏ ଡାଇନୋସର ସୋସାଇଟିକୁ ଦାନକରିଛନ୍ତି । ଏହି ସୋସାଇଟି ଏହି ଦାନ ପାଇଥିବାରୁ ଏବେ ଆନ୍-କିଲ-ଉ-ସରସକୁ ଗୋଟିଏ ନୂଆ ନାଆଁ ଦେଇଛନ୍ତି । ସେଇ ନାଆଁଟି ହେଲା ''ଜୁରାସୋସରସ ନେଦିଗୋଆପେଫର୍ କମୋରସ''; ସଂକ୍ଷେପରେ 'ଜୁରାସୋସରସ' । ଅର୍ଥାତ୍ ଏଣିକି 'ଆନ୍-କିଲ-ଉ-ସରସ' ଡାଇନୋସର ଜଗତରେ **ଜୁରାସୋସରସ** ଭାବେ ପରିଚିତ ହେବ ।





ଘୋଡ଼େଇ ଦେଲା । ଏଇ ଘୋଡ଼ଣୀଟି ଠିକ୍ ପଲମ ଭଳି । ଦୁଷ୍ଟ ଡାଇନୋସରମାନଙ୍କ ମନରେ ଭୟ ସୃଷ୍ଟି କରିବାକୁ ଦେହର ବିଭିନ୍ନ ସ୍ଥାନରେ ଝିଙ୍କକାଠି ଭଳି କଣ୍ଟା ଓ ଶିଙ୍ଗ ଖଞ୍ଜି ଦେଲା । ଏମାନଙ୍କୁ ସାଞ୍ଜୁଆ ଡାଇନୋସର କୁହାଗଲା ।

ଏସବୁ ଡାଇନୋସରମାନଙ୍କର ଓଜନିଆ ଦେହ ଆପାତତଃ ମାଟି ଆଡ଼କୁ ଝୁଲି ରହିଥିଲା । ଛୋଟ ଓ ମଜବୁତ ଗୋଡ଼ ଚାରୋଟି ଏହି ଦେହକୁ ଟେକି ଧରିଥିଲା । ପଛ ଗୋଡ଼ଠୁ ଆଗ ଗୋଡ଼ ଦୁଇଟି ସାମାନ୍ୟ ଛୋଟଥିଲା । ଜଂଘ ନଳୀଗୋଡ଼ଠୁ ବଡ଼ଥିଲା । ଏମାନେ ଧପାଲି ଧପାଲି ଚାଲୁଥିଲେ । ପାଦତଳେ ମାଂସଳ ଗଦି ଓ ଟାପୁଭଳି ଖୋଳ ଥିଲା ।

ମୁଣ୍ଡର ଖପୁରୀ ଖୁବ୍ ଶକ୍ତ ଥିଲା । ଏ ଜାତିର ଡାଇନୋସରମାନେ କିଛି ତଳମୁହାଁ ଥିଲେ ଓ ଆଉ କେତେକ ମୁହଁ ଟେକି ଚାଲୁଥିଲେ । ବାକ୍ସ ଆକାରର ଖପୁରୀ ହାଡୁଆ ଚମରେ ଆବୃତ ଥିଲା । ଏହି ଚର୍ମ ଖପୁରୀ ହାଡ଼ସହ ମିଶି ରହିଥିଲା ।

ପୋରୁହାଁ ଶିଙ୍ଗା ବା ତ୍ରିଶିଙ୍ଗା ଭଳି ଏହା ଅଣ୍ଟିଆ ଦିଶୁ ନ ଥିଲା । ମାଢ଼ି ଦୁର୍ବଳ ଥିଲା । ଦାନ୍ତସବୁ କଳପାଟିର ଚର୍ମସହ ଯୋଡ଼ି ହୋଇ ରହିଥିଲା । ଦାନ୍ତକୁ ମଜବୁତ କରିବା ପାଇଁ ମାଂସପେଶୀ ନ ଥିବାରୁ ଅନୁମାନ କରାଯାଏ ଯେ ଏମାନେ ନରମ, ରସାଳୁଆ ଶାଖା-ପ୍ରଶାଖା ଓ କୋମଳ ଗଛଲତା ହିଁ ଖାଉଥିଲେ । ବିଶେଷକରି ଡିମିରି ଜାତୀୟ ଗଛ ଓ ଫଳ ହୁଏତ ଏମାନଙ୍କର ପ୍ରିୟଖାଦ୍ୟ ଥିଲା । କେତେକ ବିଶେଷଜ୍ଞ କହନ୍ତି ଯେ ଏମାନେ କୀଟପତଙ୍ଗ ବି ଖାଉଥିଲେ । ପିମ୍ପୁଡ଼ି ଓ ସେହିଭଳି କୀଟମାନଙ୍କୁ ଏମାନେ ଆଗ୍ରହର ସହ ଗିଳି ପକାଉଥିଲେ ।

ଉତ୍ତର ଆମେରିକା, ୟୁରୋପ ଓ ଏସିଆର ଶୁଷ୍କ ଅଞ୍ଚଳରେ ଏହି ସାଞ୍ଜୁଆ ଡାଇନୋସରମାନେ ଦେଖା ଯାଉଥିଲେ । 'ଷ୍ଟେଗୋସରସ' ଭଳି ଠିଆ କାତି ଥିଲା 'ସେଲିଡୋସରସ'ର । ୧୨ ଫୁଟ ଲମ୍ବର ଏହି ତୃଣଭୋଜୀ ଡାଇନୋସରର ପିଠିରେ ତିନିଧାଡ଼ି କାତି ଠିଆ ହୋଇ ରହିଥିଲା । ଏସବୁ କାତି 'ଷ୍ଟେଗୋସରସ' କାତିଠାରୁ ଯଥେଷ୍ଟ ଛୋଟ ଥିଲା । ନେଉଳ ଭଳି ସେ ମୁଣ୍ଡ ଠିଆ କରି ଚାଲୁଥିଲା ।

ଶାନ୍ତ, ନିରୀହ ଡାଇନୋସରଟିଏ ହେଉଛି 'ପାନୋପ୍ଲୋସରସ' । ଦେଖିବାକୁ ଆନ୍-କିଲ-ଓ-ସରସ ଭଳି । ମାତ୍ର ଲମ୍ବ ଉଚ୍ଚତାରେ ଛୋଟ । ଲାଞ୍ଜ ଅଗରେ ଗଦା ନାହିଁ । ମୁଣ୍ଡ ଓ ମୁହଁରେ ଶିଙ୍ଗ ନାହିଁ । ଦିହ ବି' ପାଖରେ ବେକଠୁ ଅଣ୍ଟା ଯାଏ ବି' ଧାଡ଼ି ଶକ୍ତ କଣ୍ଟା ଥିଲା । ପିଠିସାରା ଚାରିକଣିଆ ପ୍ଲେଟ ଭଳି କାତି । ବେକ ଓ କାନ୍ଧ ଥିଲା ସୁରକ୍ଷିତ । ହିଂସ୍ର ଡାଇନୋସରମାନେ ତାକୁ ଆକ୍ରମଣ କରି ହଠାତ୍ କ୍ଷତାକ୍ତ କରିପାରୁ ନଥିଲେ । ଶତ୍ରୁକୁ ଦେଖିଲେ ସେ ମାଟି ଉପରେ ବସି ପଡ଼ୁଥିଲା । ଡାଇନୋସରମାନେ ତାକୁ ଶୀକାର କରି ସହଜରେ ଖାଇପାରୁ ନଥିଲେ । ନିରୀହ ଡାଇନୋସରଟିକୁ ସୁରକ୍ଷିତ ରଖିବାପାଇଁ ପ୍ରକୃତିର କୌଶଳ ଖୁବ୍ କୌତୁକ ପୂର୍ଣ୍ଣ ।





'ନଡୋସରସ'କୁ ଦେଖିଲେ ଜାଣି ହେବ ଯେ ି କିପରି ସୁରକ୍ଷାର ସାଞ୍ଜୁଟିଏ ଘୋଡ଼େଇ ଇଥିଲା ଏହି ଡାଇନୋସରର ପିଠି ଉପରେ । ଏଇଭଳି ଦେଖିବାକୁ 'ସିଲଭିସରସ' । ମୁହଁଟି ଗାସରସ ଭଳି । ଲାଞ୍ଜସାରା କଣ୍ଟା, କାନ୍ଧ ାୁ ଏପଟେ ଓ ସେପଟେ ଯୋଡ଼ିଏ ଯୋଡ଼ିଏ । ଏହି ଶିଙ୍ଗ ଦୁଇଟି ଆକ୍ରମଣ କରିବା ପାଇଁ ।। ଅନ୍ୟ ମନରେ ଭୟ ସୃଷ୍ଟିପାଇଁ ଏହାକୁ ' ଓଲଟା ଖଞ୍ଜି ଥିଲା । 'ଆକାନ୍ଥୋଫୋଲିସ' ଏହି ଜାତିର ଅନ୍ୟ ଏକ ଡାଇନୋସର । ବେକ ସଳଖ କରି ଠିକ୍ କୁକୁର ବସିବା ଭଳି ସେ ବସିପାରୁଥିଲା । ବେକ ଓ କାନ୍ଧ ପାଖରେ କଣ୍ଟାମାଳ ଟେକିହୋଇ ରହିଥିଲା । ସାଧାରଣତଃ ମାଂସାଶୀ ଡାଇନୋସର ତା'ର ପଞ୍ଝାରେ ବେକ ଓ କାନ୍ଧକୁ ମାଡ଼ିବସି ମୁଣ୍ଡକୁ ମୋଡ଼ି ଦବାକୁ ଚେଷ୍ଟା କରେ । ସେଇଥିପାଇଁ ଏଇ 'ଆକାନ୍ଥୋଫୋଲିସ'ର ବେକ କି କାନ୍ଧ ଉପରେ ହଠାତ୍ ପଞ୍ଝାରଖି ଆକ୍ରମଣ କରିବାକୁ କେହି ସାହସ କରୁ ନଥିଲେ ।



## ହିଲାଇଓସରସ

ଆତ୍ମରକ୍ଷାପାଇଁ ମଣିଷ ନିରାପଦ ସାଞ୍ଜୁଟିଏ ନିଜପାଇଁ ତିଆରି କରିପାରିଛି । ଗୋଡ଼ଠୁ ମୁଣ୍ଡଯାଏ ଲୁହା ପ୍ଲେଟରେ ଘୋଡ଼େଇ ପକେଇଲେ ଶତ୍ରୁ ର ଠେଙ୍ଗା, ଛୁରୀ, ଖଣ୍ଡା ଓ ଶରକୁ ଆଉ ଭୟ ରହେନାହିଁ । ସାଞ୍ଜୁବନ୍ଧ ମଣିଷଟି କେଡ଼େ ବିଚିତ୍ର ଓ ଭୟଙ୍କର ଦିଶୁଛି ! ତାକୁ ଦେଖିଲେ ଶତ୍ରୁ ବରଂ ସାବଧାନ ହୋଇଯାଏ.... ମନରେ ତା'ର ଭୟ ଆସେ ।

'ହିଲାଇଓସରସ' କୋଡ଼ିଏ ଫୁଟ ଲମ୍ବର ଡାଇନୋସର । ମାଟିତଳୁ କଙ୍କାଳ ସାଥିରେ ଅଧା 'ବଳା'ପରି କାତି ଓ ଶିଙ୍ଗମାନ ଅବିକଳ ମିଳିଥିବାରୁ ବୈଜ୍ଞାନିକମାନେ ମନେ କରନ୍ତି ଯେ ଏହି ଡାଇନୋସରଟିକୁ ପ୍ରକୃତି ଖୁବ୍ ସୁରକ୍ଷିତ କରାଇପାରିଥିଲା । କେବଳ ମୁଣ୍ଡକୁ ଛାଡ଼ିଦେଲେ ବେକଠାରୁ ଲାଞ୍ଜଯାଏ ଶକ୍ତକାତିର ବଳାମାନ ଖଞ୍ଜି ହୋଇ ରହିଥିଲା । ମାଟିକୁ ଛୁଇଁ ଛୁଇଁ ଧୀରେ ଧୀରେ ସେ ଚାଲେ ।

ଶତ୍ରୁ ଆସିବାର ଜାଣିଲେ ଚୁପଚାପ ବସିପଡ଼େ । ତା'ର କଣ୍ଟାଳିଆ ଦେହ ଶକ୍ତ କାତିର ବଳାମାନଙ୍କୁ ଦେଖି ଶତ୍ରୁ କେବେ ଭାବିବ ନାହିଁ ତାକୁ ଆକ୍ରମଣ କରିବାପାଇଁ । ତେଣୁ ହିଲାଇଓସରସ ଖୁବ୍ ନିରାପଦରେ ଚଳପ୍ରଚଳ କରି ପାରୁଥିଲା ।



## ସାଲଟାସରସ

ଚମରେ ଘୋଡ଼େଇ ହୋଇ ରହିଥାଏ, ରକ୍ତ ମାଂସର ଦେହ । ଚମ ଯେତେ ଟାଣ, ଦେହ ସେତେ ସୁରକ୍ଷିତ । ଡାଇନୋସରମାନଙ୍କ ଚମ ଥିଲା ମୋଟା, ଟାଆଁସା ଓ ଆବୁ ଆବୁଆ । ଚମ ଯେତେ ମୋଟା ବା ଶକ୍ତ ହେଲେ ବି ଏଲୁସରସ କି ଟିରାନୋସରସର ନଖ ତାକୁ ଚିରି ପକାଉଥିଲା । ଡିନୋନିକସ ଏମିତି ଗୋଟିଏ ଡାଇନୋସର ଥିଲା ଯେ ତା'ର ପଞ୍ଝାରେ ଥିବା ନଖ ଛୁରୀଭଳି କାମ କରୁଥିଲା । ତେଣୁ ତୃଣଭୋଜୀ ଡାଇନୋସରଙ୍କ ପିଠି,ବେକ ଓ ଲାଞ୍ଜକୁ ସାଞ୍ଜୁଆ କରି ଦେଇଥିଲା ପ୍ରକୃତି । ମାଟିତଳେ ଡାଇନୋସରମାନଙ୍କ ଚର୍ମର ଅବିକଳ ନକଲ ରହିଥିବାରୁ ବୈଜ୍ଞାନିକମାନେ ଚର୍ମର ଆକୃତି ପ୍ରକୃତି ସମ୍ପର୍କରେ କଳ୍ପନାଜଳ୍ପନା କରିପାରୁଛନ୍ତି ।

୬୫ ନିୟୁତ ବର୍ଷତଳେ ଆର୍ଜେଣ୍ଟିନା ଅଞ୍ଚଳରେ ରହୁଥିଲା 'ସାଲଟାସରସ' । ଗଣ୍ଡା ପିଠିରେ ଯେମିତି ଚର୍ମର ଗୋଟିଏ ସାଞ୍ଜୁ ଥିଲା ଭଳି ଲାଗେ ଏହି 'ସାଲଟାସରସ' ପିଠିରେ ଆବୁ ଆବୁଆ ଛୋଟବଡ଼ ହାଡୁଆ ଗୋବ ଥିଲା ବୋଲି ଅନୁମାନ କରାଯାଇଛି । ଏହି ଚର୍ମ-ସାଞ୍ଜୁ 'ଆନ୍-କିଲ-ଉ-ସରସ'ର ପଲମ ଭଳି ଖୋଳପାଠାରୁ ଭିନ୍ନ । ଏହିଭଳି ଶକ୍ତ ଓ ଆବୁଆ ଚର୍ମ-ସାଞ୍ଜୁକୁ ଡିନୋନିକସ ସହଜରେ ଚିରି ପକାଇ ପାରୁ ନଥିଲା । ତେଣୁ ଏହି ଡାଇନୋସରଟି ଅନ୍ୟ ତୃଣଭୋଜୀ 'ସରୀସୃପକଟୀ ଡାଇନୋସର ମାନଙ୍କଠୁ କିଛି ମାତ୍ରାରେ ନିରାପଦ ଥିଲା ।







## ପ୍ଲେଟ-ଓ-ସରସ
### (ନୀରସ-ଗୋଧୂ)

ଟ୍ରାଇଆସିକ ଯୁଗର ଶେଷାଦ୍ଧ ଓ ଜୁରାସିକ୍ ଯୁଗର ଆରମ୍ଭ କାଳରେ ଏହି ଡାଇନୋସରମାନେ ଦକ୍ଷିଣ-ଆମେରିକା, ୟୁରୋପ, ଆଫ୍ରିକା ଏବଂ ଏସିଆର ବିସ୍ତୃତ ଅଞ୍ଚଳରେ ଦେଖାଯାଉଥିଲେ । ପାଞ୍ଚ ଫୁଟରୁ ୨୬ ଫୁଟ ଯାଏ ଲମ୍ବର

ଆମୋସରସ, କୋଲୋରାଡ଼ିସରସ, ୟୁସ୍କୋଲୋସରସ୍, ଲୁଫେନ୍‌ଗୋସରସ, ମାସୋସ୍ପଣ୍ଡିଲସ, ମୁସ୍‌ସରସ ପ୍ରଭୃତି ଏହି ଜାତିର ଡାଇନୋସର ଏହି ସମୟରେ ବିଚରଣ କରୁଥିଲେ । ଏମାନେ ଚାମଚ ଭଳି ଖାଲୁଆ ଦାନ୍ତରେ କଚ କଚ କରି ଗଛପତ୍ର ସିନା ଗିଳି ପକାଉଥିଲେ ମାତ୍ର ମଣ୍ଡ କଲାଭଳି ଚୋବେଇ ପାରୁ ନଥିଲେ । ଖପୁରୀ ଓ ଦାନ୍ତ ଖୁବ୍ ଶକ୍ତି ଥିବାରୁ ବହୁ ପରିମାଣର ଗଛପତ୍ର, ତୃଣ ପ୍ରଭୃତି ଛିଣ୍ଡାଇ ଖାଇ ପାରୁଥିଲେ ।



## କାମ୍ପଟୋସରସ୍
### (ନହକାଗୋଧି)

ଦୁଇଟା ମଜବୁତ ଡେଙ୍ଗା ପଛ ଗୋଡ଼ରେ ସଳଖ ଚାଲେ । ସେତେବେଳେ ଆଗ ଗୋଡ଼ ଦି'ଟା ମଣିଷର ଦି' ହାତ ଭଳି କାମ କରେ । ଉଚ୍ଚା ଗଛରୁ ପତ୍ର ଖାଇବାବେଳେ ଏମିତି ଠିଆ ହୋଇ ସେ ପତ୍ର ଖାଏ ।

ଦରକାରବେଳେ ଛୋଟ ଦି'ଟା ଆଗ ଗୋଡ଼କୁ ତଳକୁ କରି ଚାରିଗୋଡ଼ରେ ଚାଲେ । ମାଟି ଉପରେ ଥିବା ଘାସ ଓ ଶିଉଳି ଖାଏ । ମୁହଁ ସାମ୍ନାରେ ଧାରୁଆ ଚଞ୍ଚୁ ଥାଏ । ଏଥିରେ ସେ ତାଳପତ୍ର କାଟିପାରେ । ପାଟିର ଶେଷ ଆଡ଼କୁ ଦାନ୍ତ ଥାଏ । ଚୋବେଇବାରେ ଏହା ତାକୁ ସାହାଯ୍ୟ କରେ କାମ୍ପଟୋସରସ ୬ ଫୁଟରୁ ୨୦ ଫୁଟ ଲମ୍ବଯାଏ ଦେଖାଯାଉଥିଲେ । ଏଡ଼େ ବଡ଼ ଡାଇନୋସରଟା ! ତା'ର ସୁରକ୍ଷା ପାଇଁ ପ୍ରକୃତି କିଛି କରିନାହିଁ । ଶୁଖିଲା ଭୂଇଁରେ ଓ ଜଳମୟ ଅଞ୍ଚଳରେ ଏମାନେ ଦେଖା ଯାଉଥିଲେ । ମାଂସଶୀ ଡାଇନୋସରକୁ ଦେଖିଲେ ହୁଏତ ପାଣି ଭିତରକୁ ପଶିଯାଇ ଆତ୍ମରକ୍ଷା କରୁଥିବେ ବୋଲି କଳ୍ପନା କରାଯାଏ । ଅନ୍ୟଥା ବିରାଟକାୟ ଏଲୁସରସର ସହଜ ସୁଖାଦ୍ୟରେ ପରିଣତ ହୋଇଥିବେ । ଅତି ସହଜରେ ନଇଁ ପାରୁଥିବାରୁ ଏହାକୁ ବିଜ୍ଞାନୀ ଭାଷାରେ କାମ୍ପଟୋସରସ ଏବଂ ଆମ ଭାଷାରେ 'ନହକା ଗୋଧି' ବୋଲି କୁହାଯାଏ ।





## ଇଗୁଆନ୍-ଉ-ଡ଼ନ୍



କ୍ରେଟାସିଅସ ଯୁଗ ସରି ଆସିବାର ସମୟ । ଆକାଶଛୁଆଁ ଡେଙ୍ଗା ଡେଙ୍ଗା ଗଛସବୁ ସରି ଆସୁଥାଏ । ଲମ୍ବା ବେକଥିବା ବ୍ରାକ୍-ଉ-ସରସ, ବ୍ରନ୍-ଟୁ-ସରସ, ଡିପ୍ଲୋ-ଡୁ-ଉକସ ପ୍ରଭୃତି ଡ଼ାଇନୋସର ପ୍ରାୟ ଲୋପ ପାଇ ଆସିଲେଣି । ଡାଇନୋସରମାନଙ୍କର ବେକ ବି ଛୋଟ ହୋଇ ଯାଉଥାଏ । ଛୋଟ ବେକ ଥିବା ଓ ଡାଳ ଛିଣ୍ଡେଇ ଖାଉଥିବା ଡ଼ାଇନୋସରଟିଏ ଇଗୁଆନ୍-ଉ-ଡ଼ନ ।

ସବଳ ଦେହ । ଏଇ ଡ଼ାଇନୋସରର ଲମ୍ବ ୧୩ ଫୁଟ (ଚାରିମିଟର) ରୁ ୨୯ ଫୁଟ (ନଅ ମିଟର) । ଉଚ୍ଚା ହେବ ୧୫ ଫୁଟ । ହାତୀଠୁ ଫୁଟେ ଦି ଫୁଟ ସେ ଢେଙ୍ଗା । ହେଲେ ହାତୀଭଳି ଓଜନଦାର ନୁହେଁ । ହାତୀର ଓଜନ ୭.୫ ଟନ । ଇଗୁଆନ୍-ଉ-ଡ଼ନର ଓଜନ ୪.୫ ଟନ । ପଛଗୋଡ଼ ଦି'ଟା ଖୁବ୍ ଶକ୍ତ; ପାଦର ଆଙ୍ଗୁଠି ସଂଖ୍ୟା ତିନୋଟି । ହାତୀଭଳି ତା'ର ଚକା ପାଦ ନୁହଁ । ଆଗ ଦୁଇଗୋଡ଼କୁ ମାଟିରେ ଲଗେଇ ଚାଲିପାରେ । ଆଗ ଗୋଡ଼ ଟେକି ଦୁଇଗୋଡ଼ରେ ବି ଚାଲିପାରେ । ତୃଣଭୋଜି ଡ଼ାଇନୋସରମାନଙ୍କର ମୁଣ୍ଡ ଖୁବ୍ ଛୋଟ ଥିଲା ମାତ୍ର 'ଇଗୁଆନ୍-ଉ-ଡ଼ନ୍'ର ମୁଣ୍ଡ ବଡ଼, ଓ ଥୋମଣି ଲମ୍ବା । ପାଟି ତା'ର ଚଢ଼େଇ ଚଞ୍ଚୁ ଭଳି । ଓଠ ଚାପି ଡାଳକୁ ନୁଆଁଇ ପକାଏ । ମୁଖସାମନାରେ ଦାନ୍ତ ନଥିଲା । ମାତ୍ର କଳଦାନ୍ତ ମାଢ ମାଢ । ଜିଭ ଅଠାଳିଆ ଓ ଟାଆଁସା । ସହଜରେ ଡାଳପତ୍ରକୁ ଜଡ଼େଇ ଧରୁଥିଲା । ଆଗ ଗୋଡ଼ରେ ତିନୋଟି ଆଙ୍ଗୁଳି ଯୋଡ଼ିହୋଇ ରହିଥିଲା ଓ କାଣି ଆଙ୍ଗୁଠିଟି ଖୁବ୍ ଲମ୍ବ ଥିଲା । ଏହାଛଡ଼ା ବୁଢ଼ା ଆଙ୍ଗୁଳିଟି ହାତୀଦାନ୍ତଭଳି ଦିଶେ । ଏହା କୋନାକାର ଏକ ଶକ୍ତ ନଖ । ଚଞ୍ଚୁ ମୁଖ, ଟାଆଁସା ଜିଭ ଓ ଲମ୍ବା କାଣି ଆଙ୍ଗୁଠିରେ ସେ ଶାଖାପ୍ରଶାଖାରୁ ଇଚ୍ଛାମତେ ପତ୍ର ଆଣି ଖାଇ ପାରୁଥିଲା । କଳଦାନ୍ତରେ ଚୋବେଇ ତାକୁ ଗିଳି ପକଉଥିଲା ।

କୁହାଯାଏ 'ଇଗୁଆନ୍-ଉ-ଡ଼ନ'ର କାହାକୁ ଡ଼ର ନ ଥିଲା । ପାଣିରେ ବୁଡ଼ିବାଯାଏ ପାଣିଭିତରକୁ ସେ ପଶି ଯାଇ ପାରୁଥିଲା । ଚେଣ୍ଟାଭଳି ତା'ର ବୁଢ଼ାନଖରେ ଶତ୍ରୁ ଦିହକୁ ଫୁଟେଇ ପଲ୍ଲାଉଥିଲା ।



ଏମାନେ ଦଳ ଦଳ ହୋଇ ବୁଲୁଥିଲେ । ଫ୍ରାନ୍ସ ସୀମାକୁ ଲାଗି ବେଲ୍‌ଜିୟମର ବେରନିସାରତ୍ ଖଣି ଅଞ୍ଚଳ । ଏଇ ଖଣିର ହଜାରଫୁଟ ତଳୁ ବହୁ ସଂଖ୍ୟାରେ 'ଇଗୁଆନ୍-ଉ-ଡ଼ନ୍' କଙ୍କାଳମାନ ମିଳିଛି । ଅନେକଙ୍କ ମତରେ ଏହା ଏକ ପାର୍ବତ୍ୟ ଖାଇ ଥିଲା । ନିର୍ଭୟରେ ଏହି ପାର୍ବତ୍ୟଖାଇଟିକୁ ଅତିକ୍ରମ କରିବାକୁ ସାହାସ କରି ହୁଏତ ଚୋରାବାଲି ଅଥବା କର୍ଦ୍ଦମରେ ବୁଡ଼ି ମରିଥିଲେ ଦଳେ 'ଇଗୁଆନ୍-ଉ-ଡ଼ନ୍' । ଫଳରେ ଆଜି ସେଠୁ ବହୁ ସଂଖ୍ୟାରେ କଙ୍କାଳ ମିଳି ପାରୁଛି । କେତେକଙ୍କ ମତରେ ମାଂସାଶୀ 'ମେଗାଲୋସରସ'କୁ ସବୁ 'ଇଗୁଆନ୍-ଉ-ଡ଼ନ୍' ଭୟ କରୁଥିଲା । ହୁଏତ ଦଳେ 'ଇଗୁଆନ୍-ଉ-ଡ଼ନ୍'ଙ୍କୁ ଦେଖି 'ମେଗାଲୋସରସ' ଶିକାର ପାଇଁ ଝାମ୍ପି ପଡ଼ିଥିଲା । ପ୍ରାଣବିକଳରେ ଅନ୍ୟ 'ଇଗୁଆନ-ଉ-ଡ଼ନ୍' ତେଣୁ ବେରନିସାରତ୍ ପାର୍ବତ୍ୟଖାଇ ଭିତରକୁ ପଶିଗଲେ । ତରୁଣ ଇଗୁଆନ୍-ଉ-ଡ଼ନ୍ ମାନେ ସିନା ଡ଼େଇଁଡାଇଁ ପାହାଡ଼ ଚଢ଼ି ବଞ୍ଚିଗଲେ ମାତ୍ର ବୟସ୍କ 'ଇଗୁଆନ୍-ଉ-ଡ଼ନ୍'ମାନେ ପାର୍ବତ୍ୟ ଝରଣାର କାଦୁଅ ଭିତରେ ବୁଡ଼ି ମରିଲେ ।

ଏହି ଜାତିର ଅନ୍ୟ କେତୋଟି ଡ଼ାଇନୋସରମାନେ ହେଲେ 'ଆନାପ୍ଲୋସରସ', 'କ୍ରାସ୍‌ପେଡୋଡ଼ନ' ଓ 'ଆୱାରୋନୋସରସ '। ଏମାନେ ସବୁ ବିହଙ୍ଗ-କଟି ଶ୍ରେଣୀୟ ଡ଼ାଇନୋସର । ଉତ୍ତର ଆମେରିକା, ୟୁରୋପ, ଆଫ୍ରିକା ଓ ଏସିଆରେ ଏମାନେ ବିଚରଣ କରୁଥିଲେ ।

ଗୋଧିଟିଏ ଦେଖିବା ଆଜି ହୁଏତ ବିରଳ । ତଥାପି, ଗାଁ ହୁଡ଼ା କି ବଣପାଖ ଗାଁମାନଙ୍କରେ ଗୋଧି ଦେଖାଯାଆନ୍ତି । ଉତ୍ତର ଓ ଦକ୍ଷିଣ ଆମେରିକା, ଦକ୍ଷିଣ ଭାରତୀୟ ଦ୍ୱୀପପୁଞ୍ଜ, ଗାଲାପଗସ ଦ୍ୱୀପପୁଞ୍ଜରେ ଗୋଧି ଅଛନ୍ତି । ଜୀବବିଜ୍ଞାନୀମାନେ ଏମାନଙ୍କୁ କହନ୍ତି 'ଇଗୁଆନା କୃକ୍‌ଲାସ'' । ଖଂଜଣି ଶୁଣିବାବେଳେ ମନକୁ ଆସେ ଗୋଧିର କଥା ।

'ଇଗୁଆନ୍-ଉ-ଡ଼ନ୍'ର ଅର୍ଥ 'ଗୋଧିଦାନ୍ତ' । 'ଇଗୁଆନ୍-ଉ-ଡ଼ନ୍' ତ ଗୋଧି ନୁହଁ କି ଗୋଧିଭଳି ଦେଖାଯାଏ ନାହିଁ, ତେଣୁ ଏହାର ଏମିତି ନାଆଁ କେମିତି ହେଲା, କିଏ ଦେଲା, ସେକଥା ଜାଣିବା ଉଚିତ ।

'ଲିଉଇସ'ରେ ୧୭୯୦ରେ ଜନ୍ମ ହୋଇଥିଲେ ଗିଡିଓନ ମଣ୍ଟେଲ । ପିଲାଟି ଦିନରୁ ନଈମୁହାଣରୁ ହାଡ଼ ସଂଗ୍ରହ କରିବାରେ ବାଳକ ମଣ୍ଟେଲଙ୍କର ଆଗ୍ରହ ଥିଲା ଖୁବ୍ ବେଶି । ସେ ବଡ଼ହୋଇ ଡ଼ାକ୍ତର ହେଲେ ଓ ୧୮୧୬ରେ ମ୍ୟାରି ଆନ୍ ଉଡ୍‌ହାଉସଙ୍କୁ ବିବାହ କଲେ । ସ୍ୱାମୀଙ୍କର ହାଡ଼ ସଂଗ୍ରହରେ ଥିବା ଆଗ୍ରହ ମ୍ୟାରିଙ୍କ ମନରେ ବି କୌତୁହଳ ଆଣିଲା ।

୧୮୨୨ରେ ସସେକ୍ସର କକ୍‌ଫିଲ୍ଡ଼ରେ ମଣ୍ଟେଲ ରୋଗୀ ଦେଖିବାକୁ ଯାଇଥିଲେ । ସାଥିରେ ଥିଲେ ମ୍ୟାରି । ମଣ୍ଟେଲ ଘରଭିତରେ ରୋଗୀ



ଦେଖୁଥିଲେ ଓ ମ୍ୟାରି ବାହାରେ ଠିଆ ହୋଇଥିଲେ । ସେତେବେଳେ ସେଠି ରାସ୍ତାର ଥିବା ବଡ଼ ବଡ଼ ଗାଡ଼କୁ ପୁରଣ କରାଯାଉଥିଲା । କଞ୍ଚାମାଟି ଭିତରେ ଧଳାପଥର ଭଳି କ'ଣ ଗୋଟାଏ ଚକ୍ ଚକ୍ କରୁଥିବା ଭଳି ତାଙ୍କୁ ଦେଖାଗଲା । ମ୍ୟାରି ଆଗ୍ରହରେ ସେଇଟିକୁ ଖେଳେଇ ଦେଖିଲେ ଯେ ତାହା ଗୋଟିଏ ଦାନ୍ତ ଦାନ୍ତଟି ଖୁବ୍ ବଡ଼ ଥିଲା । କାହାର ବା ହୋଇଥିବ ସେ ଦାନ୍ତ । ସେଇଟିକୁ ସଂଗ୍ରହ କରି ନିଜ ପାଖରେ ରଖିନେଲେ ଓ ସ୍ୱାମୀଙ୍କୁ ବାଟରେ ସେଇଟି ଦେଖାଇଲେ । ସ୍ୱାମୀଙ୍କର ବିଜ୍ଞାନୀ-ମନ । ତାଙ୍କୁ ଲାଗିଲା ସେଇଟି କୌଣସି ଗୋଧିର ଦାନ୍ତ ନିଶ୍ଚୟ । ମାତ୍ର ଦାନ୍ତ ଯଦି ଏତେବଡ଼ ଗୋଧିଟି ତାହାହେଲେ କେତେବଡ଼ ହୋଇ ନ ଥିବ ! ୧୮୨୫ରେ ସେ ଗୋଟିଏ ଅତିକାୟ ଗୋଧିର କଳ୍ପନା କରି ତା' ନାଆଁ ଦେଲେ 'ଇଗୁଆନ୍-ଉ-ଡ଼ନ୍' ବା 'ଗୋଧିଦନ୍ତା' ।

ପରବର୍ତ୍ତୀ ସମୟରେ ମାଟିତଳୁ ଏହିଭଳି ଜନ୍ତୁର ଦାନ୍ତ ଓ ଶରୀରାଂଶ ମିଳିଲା । ସେ ସବୁକୁ ସଜାଡ଼ି ବିଜ୍ଞାନୀମାନେ ଦେଖିଲେ ଯେ ଯେଉଁ ବିରାଟକାୟ ଡ଼ାଇନୋସରଟି କଳ୍ପନାକୁ ଆସୁଛି ତାହା କେବେହେଲେ ଇଗୁଆନା ବା ଗୋଧି ନୁହେଁ । ତାହା ଏକ ଅତିକାୟ ଡ଼ାଇନୋସରର ଦାନ୍ତ । ମଣ୍ଟେଲ ଦଂପତି ଯେହେତୁ ତାଙ୍କ କଳ୍ପିତ ନୂଆଜୀବର ନାଆଁ ଦେଇଥିଲେ ଗୋଧିଦନ୍ତା ବା ଇଗୁଆନ୍-ଉ-ଡ଼ନ୍ । ଏହି ନୂଆ ଡ଼ାଇନୋସରଟି 'ଇଗୁଆନ୍-ଉ-ଡ଼ନ୍' ଭାବେ ତେଣୁ ପରିଚିତ ହେଲା ।

## ନଖ ଭୁଲରେ ଶିଙ୍ଗ ହୋଇଥିଲା

ହାତୀଦାନ୍ତ ଭଳି ଶଙ୍ଖମର୍ମର... ଗୋଜିଆ ଓ କୋନାକାର ସେଇ ହାଡ଼ଖଣ୍ଡଟି । ମାଟିତଳୁ ମିଳିଥିଲା । କିଏ କହିଲା ଦାନ୍ତ, କିଏ କହିଲା ଶିଙ୍ଗ । ଦାନ୍ତ ତ ଆଗରୁ ମିଳିଥିଲା । ତେଣୁ ଏଇଟି ଶିଙ୍ଗ ହୋଇଥିବ ବୋଲି ରିଚାର୍ଡ ଓଏନ୍ ଭାବିଲେ । ସେ କହିଲେ 'ଇଗୁଆନ୍-ଉ-ଡ଼ନ୍'ର ଥୋମଣିରେ ଗଣ୍ଡା (ରାଇନୋ) ଭଳି ଏକ ଶିଙ୍ଗ ଥିଲା । ସେଇ ହାଡ଼ଖଣ୍ଡ 'ଇଗୁଆନ୍-ଉ-ଡ଼ନ୍'ର ଥୋମଣି ଶିଙ୍ଗ । ତାଙ୍କ ଭାବାନାକୁ ଭିତ୍ତିକରି ଶିଳ୍ପୀ ବେଞ୍ଜାମିନ୍ ୱାଟରହାଉସ ହକିନ୍‌ସ ଛଅଶହ ଇଟା ଓ ପନ୍ଦର ଶହ ଟାଇଲରେ 'ଇଗୁଆନ୍-ଉ-ଡ଼ନ୍'ର ଏକ ମୂର୍ତ୍ତି ଗଢ଼ିଦେଲେ । ମୂର୍ତ୍ତିଗଢ଼ା ସରି ଆସିବା ଆଗରୁ 'ରିଚାର୍ଡ଼ ଓଏନ' ଅତି ଖୁସିରେ ମୂର୍ତ୍ତିର ଅଧାଗଢ଼ା ପେଟ ଭିତରେ ଗୋଟାଏ ଭୋଜିସଭା କଲେ । ମୂର୍ତ୍ତି ଗଢ଼ା ସରିଲା ୧୮୫୪ରେ ଓ ଲଣ୍ଡନର କ୍ରିଷ୍ଟାଲ ପ୍ୟାଲେସରେ ତାକୁ ସ୍ଥାପନ କରାଗଲା । ଏହା ଚାରିଗୋଡ଼ରେ ଚାଲୁଥିବା 'ଇଗୁଆନ୍-ଉ-ଡ଼ନ୍'ର ରୂପକଳ୍ପ ଥିଲା । ଥୋମଣିରେ ଶିଙ୍ଗ ଥିଲା । ଏହି ମୂର୍ତ୍ତିଟି ଏବେ ବି ରହିଛି ସେଇ କ୍ରିଷ୍ଟାଲ ପ୍ୟାଲେସ ପାର୍କରେ... । ପରବର୍ତ୍ତୀ କାଳର ବିଜ୍ଞାନୀମାନେ ଭିନ୍ନ କଥା କହିଲେ । ସେମାନେ ସେଇ ହାଡ଼ଟିକୁ ନଖ ବୋଲି ଚିହ୍ନଟ କଲେ ଓ 'ଇଗୁଆନ୍-ଉ-ଡ଼ନ୍'ର ବୁଢ଼ାଆଙ୍ଗୁଳିସ୍ଥାନରେ ତାହା ଥିଲା ବୋଲି ମତ ଦେଲେ । ତେଣୁ 'ଇଗୁଆନ୍-ଉ-ଡ଼ନ୍'ର ସେଦିନର ଶିଙ୍ଗ ଏବେ ନଖ ସ୍ଥାନରେ । ସେ ଚାରିଗୋଡ଼ିଆ ହେଲେ ବି ଦୁଇଗୋଡ଼ରେ ହାତଟେକି ଚାଲି ପାରୁଥିଲା ବୋଲି ସର୍ବଶେଷ ବୈଜ୍ଞାନିକ ମତ ।





# ଟ୍ରାକ୍-ଉ-ଡନ୍

## (କର୍କଶ ଦନ୍ତା)

ଟ୍ରାକ୍-ଉ-ଡନର ଆଉ ଗୋଟିଏ ନାଆଁ ହେଲା 'ଆନାଟୋସରସ'। ତା'ର ଥୋମଣି ବତକଭଳି ଚେପଟା ଦେଖାଯାଉଥିଲା। ସାଧାରଣତଭାବେ ତେଣୁ ତାକୁ ସମସ୍ତେ 'ବତକ ମୁହାଁ ଗୋଧି' ବୋଲି କହିଥା'ନ୍ତି। ପାଟି ଭିତରେ ତା'ର ଚକା ଚକା ୨୦୦୦ ଯାଏ ଦାନ୍ତ ଥିଲା। ଏହାକୁ କର୍କଶ ଦନ୍ତା ବି କହନ୍ତି। ଆଜିଠୁ ଆଠ କୋଟି ବର୍ଷ ତଳେ ପ୍ରାୟ ୨୫ ଜାତିର 'ଟ୍ରାକ୍-ଉ-ଡନ୍' ଉତ୍ତର ଆମେରିକାରେ ଦେଖାଯାଉଥିଲେ। ଏମାନଙ୍କର ଲମ୍ବା ଥିଲା ୯ ମିଟରରୁ ୧୨ ମିଟର (୩୦ରୁ ୪୦ ଫୁଟ)। ମୋଟା ଓ ଲମ୍ବ ଲାଞ୍ଜଟି ପଛ ଦି'ଗୋଡ଼ ସହ ଶରୀରର ଭାରସାମ୍ୟ ରକ୍ଷିବାରେ ସାହାଯ୍ୟ କରୁଥିଲା।

ନିଉ ଜର୍ସିର ଗୋଟିଏ ଛୋଟ ସହରରେ ରାସ୍ତା ତିଆରିବେଳେ ମାଟିତଳୁ ବଡ଼ ବଡ଼ ହାଡ଼ଖଣ୍ଡ





ମିଳିଥିଲା । କେହି ତାକୁ 'ତିମି'ର ହାଡ ବୋଲି କହୁଥିଲାବେଳେ କେହି କହୁଥିଲେ ତାହା ଡ୍ରାଗନ ବା ଅତିକାୟ ଅସୁରର ହାଡ଼ । କଥା ଚହଟି ଗଲା । ଫିଲାଡେଲଫିଆର ବୈଜ୍ଞାନିକ ଡଃ ଲେୟିଡି ଶ୍ରମିକମାନଙ୍କଠାରୁ ସେ ହାଡ଼ଗୁଡ଼ିକୁ ସଂଗ୍ରହ କରି ଯୋଡି ଦେଖିଲେ ଯେ ଆହୁରି କିଛି ହାଡ଼ ମିଳି ନାହିଁ । ପୁନର୍ବାର ଘର ଘର ବୁଲି ବହୁ ପରିଶ୍ରମ ପରେ ସେ ହାଡ଼ସବୁ ପାଇଲେ । ମିଳିଥିବା ହାଡ଼ରେ ଯେଉଁ ବିରାଟକାୟ କଙ୍କାଳଟି ଠିଆ ହେଲା ତାହା ହିଁ ଥିଲା ଆମେରିକାରେ ମିଳିଥିବା ପ୍ରଥମ ଟ୍ରାକ୍-ଉ-ଡନ ପ୍ରାକୃତିକ ବିଜ୍ଞାନ ଏକାଡ଼େମୀ ହଲରେ ଟ୍ରାକ୍‌ଉଡ଼ନର କଙ୍କାଳଟି ସୁରକ୍ଷିତ ରହିଛି । ଟ୍ରାକ୍‌ଉଡ଼ନର ଗୋଟିଏ ଜାତି ହେଲା 'ଏଡ଼ମଣ୍ଡୋସରାସ' । ନାକଦଣ୍ଡୀ ଉପରେ ଶକ୍ତ ହାଡ଼ କୁଞ୍ଚଟିଏ ଦେଖାଯାଉଥିଲା । ମାତ୍ର 'କ୍ରିଟୋସରାସ'ର ତାଳୁ ଉପରକୁ ଥିଲା ଏହି ହାଡ଼ କୁଞ୍ଚ । ଅନ୍ୟ କେତୋଟି ଜାତିର ଶକ୍ତଚୂଳ ମଧ୍ୟ ଥିଲା । କୁକି କୁକୁଡାର ନାଲି ଚୂଳ ଭଳି 'ହିପାକ୍ରୋସରସ'ର ନାକଦଣ୍ଡୀ ଉପରେ ଚୂଳ ଦେଖାଯାଉଥିଲା । 'କାସୋଆରୀ' ଚଢ଼େଇଭଳି 'କରିଥୋସରସ 'ଏବଂ 'ଲାମ୍ବେଓସରସ'ର ଉଚ୍ଚଚୂଳ ଥିଲା । 'ସିଣ୍ଟାନୋସରସ'ର ଶିଙ୍ଗ ଭଳି ତାଳୁ ଉପରେ ଶକ୍ତ ହାଡ଼ର ଗୋଟିଏ ରହିଥିଲା ।









ପାରାସଉରୋଲୋଫସ ଏହି ଛାତିର ବେଶ୍ କୌତୁକିଆ 'ବ୍ରାକ୍-ଉ-ଡନ୍'ଟିଏ । ଏମାନେ ଲମ୍ବରେ ୨୦ରୁ ୩୦ ଫୁଟ । ମୁଣ୍ଡ ଉପରେ ହାଡ଼ର ନଳଟିଏ ଲମ୍ବି ଯାଇଥିଲା ପ୍ରାୟ ୧.୮ ମିଟର । ଏହା କିରୀଟି ଭଳି ଦେଖା ଯାଉଥିଲା । ଏହି ହାଡ଼ନଳ ଉପରେ ବୈଜ୍ଞାନିକମାନେ ଭିନ୍ନ ଭିନ୍ନ ମତ ଦିଅନ୍ତି । କେତେକ କହନ୍ତି ଯେ ଏହି ନଳରେ ପବନ ଥାଏ, ପାଣିରେ ବୁଡ଼ି ରହିବାବେଳେ ବୁଡାଳିର ପବନଥଳୀ ଭଳି ଏହା କାମ କରୁଥିଲା । ଅନ୍ୟମାନେ କହନ୍ତି ଯେ ଏହି ନଳର ମୁଣ୍ଡରେ କଣା ଥିଲା ତେଣୁ ପବନଥଳି ଭଳି କାମ କରିବା ସମ୍ଭବ ନୁହେଁ । ମାତ୍ର ଅନେକଙ୍କର ମତ ହେଲା ଯେ ନାକରନ୍ଧ୍ର ସହ ଏହି ହାଡ଼ନଳଟି ଯୋଡ଼ି ହୋଇ ରହିଥିଲା । ବଂଇଶୀ ଭଳି ଏହା ଶବ୍ଦ ସୃଷ୍ଟିରେ ସାହାଯ୍ୟ କରୁଥିଲା । 'ପାରାସଉରୋଲୋଫସ' ଏହି ବିଚିତ୍ର ବ୍ୟବସ୍ଥାମାଧ୍ୟମରେ ସୁସୁରୀ ମାରିବା ଭଳି କୁହାଟୁଥିଲା । ସାଙ୍ଗ ମାନଙ୍କୁ ଡାକୁଥିଲା... ବିପଦ ଆସିଲେ ବୋବେଇ ଉଠି ଅନ୍ୟମାନଙ୍କୁ ସାବଧାନ କରି ଦେଉଥିଲା ।